


# ବାଲିଆପାଳ କୋଳରେ ପଞ୍ଜାବ ?

ଡକ୍ଟର ନାରାୟଣ

# ାଲିଆପାଳ କ୍ରୋଳରେ ପଞ୍ଜାବ ?

**ଡକ୍ଟର ନାରାୟଣ**

ବି: ଏସ୍‌ସି: (ଅନର୍ସ), ବି: ଟେକ୍: (ଅନର୍ସ), ଏମ୍: ଟେକ୍:, ପି: ଏଚ୍: ଡି:

**ନୀଳବାତ୍ୟା ପ୍ରକାଶନ**

ବସ୍ତରୋଡ୍, ଶିମୁଳିଆ, ବାଲେଶ୍ୱର-୭୫୬୧୨୬

# ବାଲିଆପାଳ କୋଳରେ ପଞ୍ଜାବ ?

ଲେଖକ :

ଡଃ ନାରାୟଣ
ବାରିରୋଡ, ଶିମୁଳିଆ
ବାଲେଶ୍ୱର-୭୫୬୧୨୬

ପ୍ରକାଶକ :

ଲାଲବାତ୍ୟା ପ୍ରକାଶନ
ବାରିରୋଡ, ଶିମୁଳିଆ
ବାଲେଶ୍ୱର-୭୫୬୧୨୬

ମୁଦ୍ରଣ :

କଳିଙ୍ଗ ପ୍ରିଣ୍ଟର୍ସ
ଚରମ୍ପା-୭୫୬୧୦୧, ଭଦ୍ରକ

ପ୍ରଥମ ପ୍ରକାଶନ :
ଜୁଲାଇ ୫, ୧୯୮୭

**ମୂଲ୍ୟ : ଦଶଟଙ୍କା ମାତ୍ର**

**BALIAPAL KO(U)LARE PUNJAB ?**

By Dr. Narayan
Bari Road, Simulia
Balasore-756126

Publisher :

Lalabatya Prakasan
Bari Road, Simulia
Balasore-756126

Printed at :

Kalinga Printers
Charampa-756101
Bhadrak

First Edition :
5th July 1987

**Price : Rupees Ten only**

# ସୂଚୀପତ୍ର

**ବିଷୟ** **ପୃଷ୍ଠା**

**ବିଷୟ** **ପୃଷ୍ଠା**





# ମୁଖବନ୍ଧ

ଓଡ଼ିଶା ରାଜ୍ୟ ସରକାରଙ୍କର ପ୍ରକାଶିତ ଖବରରୁ ଜଣାଯାଏ ଯେ ବାଲିଆପାଳ ଅଞ୍ଚଳରେ ଜାତୀୟ ପରୀକ୍ଷାଞ୍ଚଳ (National Test Range NTR) ସ୍ଥାପିତ ହେବାପାଇଁ ୧୯୭୯ ମସିହାରେ (ଅର୍ଥାତ ଜନତା ସରକାରଙ୍କର ଅମଳରେ) ଭାରତ ସରକାର ମୌଳିକ ନିଷ୍ପତ୍ତି ନେଇଥିଲେ । ୧୯୮୦ ମସିହାରେ ଓଡ଼ିଶା ସରକାରଙ୍କର ଗୃହରେ ଓଡ଼ିଶା ବାହାରେ ଏହି ପରୀକ୍ଷାଞ୍ଚଳକୁ ସ୍ଥାପିତ କରିବା ପାଇଁ ଚେଷ୍ଟା ଚାଲିଲା । କିନ୍ତୁ ଏ ସଂପର୍କରେ ଅଧ୍ୟୟନ ପୁନଶ୍ଚ ପ୍ରତିଷ୍ଠା କଲା ଯେ ଜାତୀୟ ପରୀକ୍ଷାଞ୍ଚଳ ପାଇଁ ବାଲିଆପାଳ ହିଁ ଏକମାତ୍ର ଉପଯୁକ୍ତ ସ୍ଥାନ । ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କ ପ୍ରଚେଷ୍ଟାରେ ୧୯୮୫ ମସିହାରେ ଏହି ପ୍ରଶ୍ନର ପୁନରୁନ୍ମୋଚନ ହେଲା ଏବଂ ୧୯୮୬ ମସିହା ମଇ ୨୧ ତାରିଖରେ ଭାରତ ସରକାର ଶେଷ ସିଦ୍ଧାନ୍ତ ନେଲେ ଯେ ଓଡ଼ିଶାର ବାଲେଶ୍ୱର ଜିଲ୍ଲାରେ ବାଲିଆପାଳ - ଭୋଗରାଇ ଅଞ୍ଚଳରେ ଜାତୀୟ ପରୀକ୍ଷାଞ୍ଚଳ ସ୍ଥାପିତ ହେବ ।

ଚାରିହଜାର କୋଟି ଟଙ୍କାର ଉକ୍ତ ପ୍ରକଳ୍ପ ପାଇଁ ସମୁଦାୟ ୧୬୦ ବର୍ଗ କିଲୋମିଟର (ପରୀକ୍ଷାଞ୍ଚଳ ପାଇଁ ୧୧୫ ବର୍ଗ କି: ମି: ଓ ଜନପଦ ଅଞ୍ଚଳ ପାଇଁ ୪୫ ବର୍ଗ କି: ମି:) କ୍ଷେତ୍ରଫଳ ଦଖଲ କରିବା ପାଇଁ ମୂଳ ପ୍ରସ୍ତାବ ଥିଲା । କିନ୍ତୁ ପରେ ୧୯୮୬ ମସିହା ଅଗଷ୍ଟ ୬ ତାରିଖରେ ଲୋକସଭାରେ ପ୍ରତିରକ୍ଷା ମନ୍ତ୍ରୀ ଶ୍ରୀ ଅରୁଣ ସିଂ ସରକାରଙ୍କୁ ଦର୍ଶାଇଥିଲେ ଯେ ଏହି ଅଞ୍ଚଳ ଜନାକୀର୍ଣ୍ଣ ତଥା ଉନ୍ନତ କୃଷି ଅଞ୍ଚଳ । ଫଳରେ ସାଢେ ଛଅମାସ ପରେ ପ୍ରକଳ୍ପର ଆୟତନ ୧୦୨ ବର୍ଗ କି: ମି: (୬୮ ବର୍ଗ କି: ମି: ପରୀକ୍ଷାଞ୍ଚଳ ପାଇଁ ଏବଂ ୩୪ ବର୍ଗ କି: ମି: ଜନପଦ ଅଞ୍ଚଳ ପାଇଁ)କୁ ଖସି ଆସିଲା ।

**ବାଲିଆପାଳର ଷଡ଼ଯନ୍ତ୍ର —**

ବଙ୍ଗୋପସାଗରରେ ମିଶୁଥିବା ସୁବର୍ଣ୍ଣରେଖା ନଦୀର ଉଭୟ ପାର୍ଶ୍ୱରେ ବାଲିଆପାଳ ଓ ଭୋଗରାଇ ଅବସ୍ଥିତ । ଏହି ଦୁଇଟି ଅଞ୍ଚଳ ଓଡ଼ିଶାର ସବୁଠାରୁ ଜନାକୀର୍ଣ୍ଣ ଅଞ୍ଚଳ । ୧୯୮୧ ଗଣନା ଅନୁଯାୟୀ ଓଡ଼ିଶାର ଗ୍ରାମାଞ୍ଚଳରେ

ଜନ ସାନ୍ଦ୍ରତା ( Density of population ) ବର୍ଗ କିଲୋମିଟର ପ୍ରତି ୧୫୧ ଥିବା ସ୍ଥଳେ ଏବଂ ଖୋଦ୍ ବାଲେଶ୍ୱର ଜିଲ୍ଲାରେ ବର୍ଗ କିଲୋମିଟର ପ୍ରତି ହାରାହାରି ୩୫୭ ଥିବା ସ୍ଥଳେ ବାଲିଆପାଳ ଓ ଭୋଗରାଇର ଜନ-ସାନ୍ଦ୍ରତା ଯଥାକ୍ରମେ ବର୍ଗ କିଲୋମିଟର ପ୍ରତି ୪୦୧ ଏବଂ ୫୩୮ । ଏଥିରୁ ଅନୁମେୟ ଯେ ବାଲିଆପାଳ ଓ ଭୋଗରାଇ ଅଞ୍ଚଳ କେତେ ଜନାକୀର୍ଣ୍ଣ । ଏହି ଅଞ୍ଚଳର ଜନସାନ୍ଦ୍ରତା ଓଡ଼ିଶାର ବହୁ ସହରାଞ୍ଚଳର ଜନସାନ୍ଦ୍ରତା ସଙ୍ଗେ ତୁଳନୀୟ ।

ବାଲିଆପାଳ ଓ ଭୋଗରାଇ ଅଞ୍ଚଳ "ଓଡ଼ିଶାର ଭାତ ଥାଳ" ବୋଲି ସମସ୍ତେ କହନ୍ତି । ଏହା କିଛି ବାହାପିଆ କଥା ନୁହେଁ । ଓଡ଼ିଶା ସରକାରଙ୍କ ତଥ୍ୟ ଅନୁଯାଇ ବାଲିଆପାଳର କୃଷି ଘନତା (Cropping intensity) ୧୭୧-୨୫ ଯାହାକି ଓଡ଼ିଶା ପାଇଁ ଏହା ସର୍ବୋଚ୍ଚ ।

ଓଡ଼ିଶାର ଗ୍ରାମ୍ୟାଞ୍ଚଳ ସହିତ ତୁଳନା କଲେ ଏହି ଅଞ୍ଚଳ ଶିକ୍ଷା ଦୃଷ୍ଟିରୁ ଅଗ୍ରଣୀୟ । ଓଡ଼ିଶାର ଗ୍ରାମ୍ୟାଞ୍ଚଳର ସାକ୍ଷରତା ହାର ଯେଉଁଠିବେଳେ ୩୧-୩୭ ଶତକଡ଼ା ସେଇଠିବେଳେ ବାଲିଆପାଳ ଓ ଭୋଗରାଇର ସାକ୍ଷରତା ହାର ଯଥାକ୍ରମେ ୪୦-୪୯ ଶତକଡ଼ା ଏବଂ ୪୫-୨୮ ଶତକଡ଼ା ।

ଓଡ଼ିଶାର "ଗଣତନ୍ତ୍ର ଅଧିକାର ସୁରକ୍ଷା ସମିତି"ର "ତଥ୍ୟାନୁସନ୍ଧାନ କମିଟି"ର ରିପୋର୍ଟ ଅନୁଯାଇ କ୍ଷେପଣାସ୍ତ୍ର ଘାଟୀ ହେବାକୁ ଯାଉଥିବା ୪୦୦ ବର୍ଗ କି: ମି: ଇଲାକାରେ ୧୨୭ଟି ଗ୍ରାମ (ବାଲିଆପାଳ-୯୯, ଭୋଗରାଇ-୨୩ ଏବଂ ବସ୍ତା-୪ ), ୧୧,୯୫୦ ପରିବାର ( ୧୯୮୧ ଗଣନା ଅନୁଯାଇ ), ୧,୦୫,୭୦୦ ଲୋକସଂଖ୍ୟା (୧୯୮୧ ଗଣନା ଅନୁଯାଇ) ୩୦,୦୦୦ ପାନ-ବରଜ, ୧,୫୦,୦୦ ନଡ଼ିଆ ଗଛ, ୧୩୪ ଟି ଶିକ୍ଷାକେନ୍ଦ୍ର (କଲେଜ-୧, ହାଇସ୍କୁଲ-୧୩, ମାଇନର ସ୍କୁଲ-୩୦, ନିମ୍ନ ପ୍ରାଥମିକ ସ୍କୁଲ-୫୫, ଅଣ-ଆନୁଷ୍ଠାନିକ ଶିକ୍ଷା ସ୍କୁଲ-୩୦ ଓ ସଂସ୍କୃତ ଟୋଲ-୨) ଅନ୍ୟାନ୍ୟ ସରକାରୀ ଅନୁଷ୍ଠାନ (ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର-୧, ପଶୁ ପ୍ରଜନନ କେନ୍ଦ୍ର-୩, ଆୟୁର୍ବେଦିକ ଡାକ୍ତରଖାନା-୧, ସବ୍‌ପୋଷ୍ଟ ଅଫିସ-୧, ପୋଷ୍ଟ ଅଫିସ-୧୭, ଗ୍ରାମ ପଞ୍ଚାୟତ ଅଫିସ-୮, ଗ୍ରାମ ସେବକ କେନ୍ଦ୍ର-୧୨, ରାଜସ୍ୱ ନିରୀକ୍ଷକ ଅଫିସ-୩, ଷ୍ଟେଟ୍-ବ୍ୟାଙ୍କ ଶାଖା-୧, ଗ୍ରାମ୍ୟବ୍ୟାଙ୍କ୍ ଶାଖା-୪, ପବ୍ଲିକ କଲ୍ ଅଫିସ-୧) ଏବଂ ୧୨୪ ଟି ମନ୍ଦିର ଓ ଅନ୍ୟାନ୍ୟ ଉପାସନା କେନ୍ଦ୍ରମାନ ଆସୁଛି । ତେଣୁ ଏହି

ଅଞ୍ଚଳରେ ଜାତୀୟ ପରୀକ୍ଷାଗାର (ବା କ୍ଷେପଣାସ୍ତ୍ର ଘାଟୀ) ହେଲେ ଲକ୍ଷାଧିକ ଜନତାଙ୍କ ସହ ଏମାନଙ୍କର ଘରଦ୍ୱାର ଏବଂ ବିଭିନ୍ନ ଅନୁଷ୍ଠାନମାନ ଉତ୍ଖାତ୍ ହେବ ।

ଏହି ରିପୋର୍ଟ ଅନୁଯାଇ ଧାନବିଷ, ପାନବରଜ, ନଡ଼ିଆ ଓ ଅନ୍ୟାନ୍ୟ ଫଳ, ମଧୁର ମାଛ, ସମୁଦ୍ର ମାଛ, ଚିନାବାଦାମ, ତୈଳ ବୀଜ, କାଜୁ, ବାଉଁଶ, କାଠ, ବାଉଁଶ ଟୋକେଇ, ବୁଣା ସପ, ମଶିଣା, ନଡ଼ିଆକତା ଶିଳ୍ପ, ଲୁଣ ଆମଦାନୀ, ମାଛ ଗୋଦାମ, ଧାନ କୁଟା କଳ, ତେଲ କଳ, ଡଙ୍ଗା, ଜାଲ, ଟ୍ରଲର ଇତ୍ୟାଦିରୁ ବାର୍ଷିକ ଆୟ ପ୍ରାୟ ୧୫୦ କୋଟି ଟଙ୍କାରୁ ଅଧିକ ହେବ । ୧୯୮୭ ମସିହା ସେପ୍ଟେମ୍ବର ୧୮, ୧୯ ଓ ୨୦ ତାରିଖରେ **All-India Federation of Organisations for Democratic Rights (AIFOFDR)** ତରଫରୁ ଏକ ସର୍ବଭାରତୀୟ ତଥ୍ୟାନୁସନ୍ଧାନ କମିଟି (**All-India Fact Finding Committee**) ବାଲିଆପାଳ ଓ ବାଲେଶ୍ୱର ପରିଦର୍ଶନ କରିଥିଲେ । ଏହି କମିଟିର ରିପୋର୍ଟ ଅନୁଯାଇ ଘାଟୀ ହେବାକୁ ଯାଉଥିବା ଅଞ୍ଚଳରେ ବାର୍ଷିକ ଆୟ ପ୍ରାୟ ୪୦୦ ରୁ ୭୦୦ କୋଟି ଟଙ୍କା ଭିତରେ ହେବ ।

ଉକ୍ତ କମିଟିର ସମ୍ମୁଖରେ ବାଲେଶ୍ୱରର ଜିଲାପାଳ (Collector) ସ୍ୱୀକାର କରିଥିଲେ ଯେ ଭିତାପୁର ( ବାଲିଆପାଳରେ ଅବସ୍ଥିତ ) ଷ୍ଟେଟ୍-ବ୍ୟାଙ୍କ୍ ଶାଖା କେବଳ ପାନ, କାଜୁ ଓ ମାଛ ବ୍ୟବସାୟୀଙ୍କ ଦ୍ୱାରା ଦିନକୁ ୨ ଲକ୍ଷ ଟଙ୍କାର କାରବାର କରନ୍ତି । ଏହି କମିଟି ଅନୁସାରେ ଏହି ଅଞ୍ଚଳର ପାନବରଜ ଏକ ବିଶେଷ ଅର୍ଥନୈତିକ ଭୂମିକା ସାଧନ କରିଥାଏ । ଏହି ଅଞ୍ଚଳର ମୃତ୍ତିକା ଏଭଳି ଯେ ଏଠାରେ ଜଗନ୍ନାଥୀ ଓ ବନାରସୀ ପାନ ଉତ୍ପାଦିତ ହୁଏ । ସାରାଭାରତ ତଥା ଭାରତ ବାହାରେ ବିଭିନ୍ନ ବିଦେଶକୁ ଏହି ପାନ ରପ୍ତାନି କରାଯାଏ । ଏହି ଅଞ୍ଚଳରେ ଯଦିଓ ଦାରିଦ୍ର୍ୟତା ପରିଲକ୍ଷିତ ହୁଏ ତଥାପି ଓଡ଼ିଶାର ଅନ୍ୟାନ୍ୟ ଗ୍ରାମ୍ୟାଞ୍ଚଳ ଅପେକ୍ଷା ଏହା ଖୁବ୍ କମ୍ । କହିବାକୁ ଗଲେ ସମସ୍ତେ ପ୍ରାୟ ପେଟପୋଷି ପାରନ୍ତି । କେତେକ ଗୋଷ୍ଠୀ ମଧ୍ୟ ଅତ୍ୟନ୍ତ ପରିମାଣରେ ଧନୀ । ଆଉ ଏକ ବିଶେଷତ୍ୱ ଏଠାରେ ପରିଲକ୍ଷିତ ହୁଏ ଯେ ଓଡ଼ିଶାର ଅନ୍ୟାନ୍ୟ ଗ୍ରାମ୍ୟାଞ୍ଚଳରୁ ଲୋକେ ଯେତେବେଳେ ବଞ୍ଚିବା ପାଇଁ ନିଜ ଜିଲ୍ଲାର ବାହାରକୁ ଚାଲିଯାଆନ୍ତି ସେତେବେଳେ ବାଲିଆପାଳ

ଅଞ୍ଚଳକୁ ବୃଷ ଅମଳ ସମୟରେ ବାହାରୁ ଶ୍ରମିକମାନେ ଆସନ୍ତି । ୩୦,୦୦୦ ମ.ଛ ମତ୍ସ୍ୟଜୀବୀମାନଙ୍କ ମଧ୍ୟରୁ ବେଶ କିଛି ଲୋକ ବାହାରୁ ଆସନ୍ତି ।

ଅର୍ଥାତ୍, ଏହି ଅଞ୍ଚଳରେ କ୍ଷେପଣାସ୍ତ୍ର ଘାଟୀ ନିର୍ମାଣ ହେଲେ ବାଲିଆପାଳ ଜନଗଣଙ୍କର ନୁହେଁ ସାରା ଓଡ଼ିଶାବାସୀଙ୍କର ଏକ ଅର୍ଥନୈତିକ ବିପର୍ଯ୍ୟୟ ଘଟିବ ।

## ଜାତୀୟ ପରୀକ୍ଷାଞ୍ଚଳର ପରସର—

ବିଭିନ୍ନ ସମୟରେ ସରକାରୀ ସୂତ୍ରରୁ ପ୍ରକାଶିତ ହୋଇ ଆସୁଛି ଯେ ବାଲିଆପାଳ ଅଞ୍ଚଳ—ଜାତୀୟ ପରୀକ୍ଷା ଅଞ୍ଚଳ, ରକେଟ ପରୀକ୍ଷା ସ୍ଥଳ, କ୍ଷେପଣାସ୍ତ୍ର ସ୍ଥଳ, ସ୍ୱଳ୍ପଗାମୀ କ୍ଷେପଣାସ୍ତ୍ର ଘାଟି ଏବଂ ଦୂରଗାମୀ କ୍ଷେପଣାସ୍ତ୍ର ଘାଟି ଇତ୍ୟାଦି । ୧୯୮୬ ମସିହା ମଇ ୨୧ ତାରଖ ସରକାରୀ କଳର ଘୋଷଣାକୁ ଭିତ୍ତିକରି "ଟେଲିଗ୍ରାଫ୍" ସମ୍ବାଦପତ୍ର ଉଲ୍ଲେଖ କରିଥିଲା ଯେ ଏହି ଅଞ୍ଚଳ ଦୂରଗାମୀ କ୍ଷେପଣାସ୍ତ୍ର ପରୀକ୍ଷା ତଥା ନିକ୍ଷେପ କରିବାକୁ ସକ୍ଷମ ହେବ ।

ଏୟାର କମାଣ୍ଡାଣ୍ଟ୍ ବ୍ରଗେଡ଼ିଅର୍ କାଜଳ ପ୍ରକାଶ କରିଥିଲେ ଯେ ଏହି ଜାତୀୟ ପରୀକ୍ଷାଞ୍ଚଳକୁ "ନ୍ୟାସନାଲ୍ ରେଞ୍ଜ" ବୋଲି କହିଲେ ଭୁଲ ହେବ ନାହିଁ । ପୁନଶ୍ଚ ପ୍ରତିରକ୍ଷା ମନ୍ତ୍ରଣାଳୟର ବୈଜ୍ଞାନିକ-ଉପଦେଷ୍ଟା ଡ: ଏସ୍: ଅରୁଣାଚଳମ୍ ୧୯୮୭ ମସିହା ମଇ ୨୧ ତାରଖ ଦିନ ପତ୍ରିକାର ଭାବରେ କହିଲେ ଯେ "The nation's premier missile test range... would also be used for launching missiles & space vehicles" (ଦେଶର ୧ମ କ୍ଷେପଣାସ୍ତ୍ର ପରୀକ୍ଷାଞ୍ଚଳ ଯାହାକି କ୍ଷେପଣାସ୍ତ୍ର ନିକ୍ଷେପ ଓ ମହାକାଶଯାନ ପ୍ରେରଣ ନିମନ୍ତେ ବ୍ୟବହୃତ ହେବ ।)" ୧୯୮୪ ମସିହା ଜୁଲାଇ ୨୧ ତାରିଖରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଘୋଷଣା କରିଥିଲେ ଯେ ବାଲିଆପାଳ କ୍ଷେପଣାସ୍ତ୍ର ଘାଟିରୁ ଯେଉଁ କ୍ଷେପଣାସ୍ତ୍ର ମାନ ନିକ୍ଷେପ କରାଯିବ ତାହା ୧୦୦୦ରୁ ୫୦୦୦ କି: ମି: ପର୍ଯ୍ୟନ୍ତ ଯାଇପାରିବ । ୧୯୮୭ ମସିହା ଜୁନ ୨୩ତାରଖ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ଏକ ଚିଠିରେ ଉଲ୍ଲେଖ କରିଥିଲେ ଯେ "Our pollar satellite launch vehicle project will be very much more feasible from this site as well our surface-to-air and other factical missiles project" (ଭୂ-ପୃଷ୍ଠରୁ ଆକାଶମାର୍ଗକୁ ଏବଂ ଅନ୍ୟାନ୍ୟ କ୍ଷେପଣାସ୍ତ୍ର

ପ୍ରକଳ୍ପ ଭଳି ଏହି ଅଞ୍ଚଳ ଆମର ଦେଶର ଉପଗ୍ରହ ପ୍ରେରଣ ପ୍ରକଳ୍ପଭାବେ ବ୍ୟବହୃତ ହୋଇ ପାରିବ ।" ପୁନଶ୍ଚ, ୧୯୮୬ ମସିହା ଅଗଷ୍ଟ ୩୦ ତାରିଖ "ଇଣ୍ଡିଆନ୍ ଏକ୍ସପ୍ରେସ୍" ଖବର କାଗଜରେ ପ୍ରକାଶ ପାଇଛି ଯେ "ଭାରତ-ରେ ସ୍ୱଳ୍ପଗାମୀ କ୍ଷେପଣାସ୍ତ୍ର କାର୍ଯ୍ୟ ସକାଶେ ଟ୍ରାକର୍ ଯନ୍ତ୍ରପାତି କିଣି । ପାଇଁ ଭାରତ ସରକାର ଯେଉଁ ଅନୁରୋଧ ବହୁବାର କରିଥିଲ ତାହା ଆମେରିକା ପ୍ରତିରକ୍ଷା ବିଭାଗ ଏବେ ମଞ୍ଜୁର କଲା । ଓଡ଼ିଶାର ବାଲେଶ୍ୱରରେ ଯେଉଁ ଠାରେ କି ୩୦୦୦ କୋଟି ଟଙ୍କାର ଜାତୀୟ ପରୀକ୍ଷାଞ୍ଚଳ ହେବାକୁ ଯାଉଛି ସେଠାରେ ଏହି ଯନ୍ତ୍ରପାତି ଖଞ୍ଜାଯିବ । ଏହି ସ୍ୱଳ୍ପଗାମୀ କ୍ଷେପଣାସ୍ତ୍ରର ଗତି ନିର୍ଣ୍ଣୟ କରିବା ପାଇଁ ଏବଂ ଏହାର ଲକ୍ଷ୍ୟର ସଠିକତା ଠିକ୍ କରିବା ସକାଶେ ରାଡାର୍ ବ୍ୟବସ୍ଥା ବ୍ୟବହାର କରାହେବ ।" ଅଧିକନ୍ତୁ, ପୂର୍ବତନ ବହି-ର୍ବ୍ୟାପାର କେନ୍ଦ୍ର ମନ୍ତ୍ରୀ ଶ୍ରୀ ସମରେନ୍ଦ୍ର କୁଣ୍ଡୁଙ୍କ ଏକ ପତ୍ରରେ ପ୍ରତିରକ୍ଷା ମନ୍ତ୍ରୀ ଶ୍ରୀ ଅରୁଣ ସିଂହ ଉଲ୍ଲେଖ କରିଛନ୍ତି ଯେ **"Baliapal will be like Cape-Kennedy of America !"** (ବାଲିଆପାଳ ଆମେରିକାର କେପ୍-କେନେଡ଼ି ଭଳି ହେବ !)

୧୯୮୦ ଏବଂ ୧୯୮୩ ମଧ୍ୟରେ ବିଭିନ୍ନ ପ୍ରକାରର କ୍ଷେପଣାସ୍ତ୍ର ପାଇଁ ଭାରତ ଏବଂ ଋଷିଆ ମଧ୍ୟରେ ୪ଟି ବ୍ୟବସାୟିକ ଚୁକ୍ତି, ୪ଟି ଫ୍ରାନ୍ସ ସହିତ, ଗୋଟିଏ ଆମେରିକା ସହିତ ଓ ଗୋଟିଏ ବ୍ରିଟେନ ସହିତ ହୋଇ ସାରିଛି ।

ଉପରୋକ୍ତ ଘଟଣାବଳୀରୁ ଜଣାପଡ଼େ ଯେ ବାଲିଆପାଳରେ ହେବାକୁ ଯାଉଥିବା ଜାତୀୟ ପରୀକ୍ଷାଞ୍ଚଳ ଏକ ଶ୍ରେଷ୍ଠ କାଠିଆ ପ୍ରକଳ୍ପ ନୁହେଁ । "ଠାକୁର ବାଡ଼ରେ କିଏ ? ନା, ମୁଁ କଦଳୀ ଖାଇନାହିଁ ।" କହିଲା ଭଳି ଓଡ଼ିଶା ସରକାର ଆଗରୁ କହି ସାରିଛନ୍ତି ଯେ ବାଲିଆପାଳର ପ୍ରକଳ୍ପ କେବଳ ପ୍ରତିରକ୍ଷା ଓ ସିଭିଲ୍ ଉଦ୍ଦେଶ୍ୟରେ କରାଯାଉଛି ଏବଂ ଏହି ପ୍ରକଳ୍ପରେ କୌଣସି ମତେ ଆଣବିକ କିମ୍ବା ପରମାଣବିକ ଅସ୍ତ୍ର ଶସ୍ତ୍ର ଖଞ୍ଜା ହେବନାହିଁ । କିନ୍ତୁ ଉପରୋକ୍ତ ଘଟଣାବଳୀ ସୂଚାଉଛି ଯେ ଏହି ପ୍ରକଳ୍ପ ଖାଲି ପ୍ରତିରକ୍ଷା ମୂଳକ ହେବ ନାହିଁ । ଅଧିକନ୍ତୁ, ଏହା ଆକ୍ରମଣାତ୍ମକ (Offensive) ହେବ । ପୁନଶ୍ଚ ଏହି ପ୍ରକଳ୍ପର ପ୍ରସ୍ତୁତି ଏଭଳି ଯେ ଏହା ଯେ କୌଣସି ମୁହୂର୍ତ୍ତରେ ଆଣବିକ ଓ ପରମାଣବିକ ଚରିତ୍ରର ହୋଇପାରେ । **Far Eastern Economic Review (11-9-86)**ରେ ଶ୍ରୀ ମୋହନରାମ ଲେଖିଛନ୍ତି ଯେ :

"India is a threshold nuclear power, having carried out a 'peaceful nuclear explosion' while viewing not to use nuclear energy for military ends... India thus retains the nuclear bomb option but lacks a delivery system. So, the decision to set up a range capable of launching long-range missiles has roused apprehensions that India might be developing such a system...Sceptics argue that a missile capable of delivering a conventional warhead can be used for a nuclear warhead if need be." On June 3 this year, the prime-Minister told a French interviewer that "if we should take the decision to become a nuclear power it would be a matter of a few weeks or a few months." On June 8 he revealed that the Government "had not yet reached a decision"to make nuclear weapons, but "we have already worked on this", and it made, it could be a "secret decision." On June 3 it self he had said that, "we are thinking about it (making the bomb.)"

ଆଣବିକ, ପରମାଣବିକ ବୋମାବାହୀ ଏଭଳି କ୍ଷେପଣାସ୍ତ୍ର ଘାଟି ବାଲିଆପାଳ ତଥା ଓଡ଼ିଶା ଏବଂ ପଶ୍ଚିମ ବଙ୍ଗ ପାଇଁ କ'ଣ ବିପଦ ସଙ୍କୁଳ ହେବ ନାହିଁ କି ? ଏଭଳି ସାମରିକ ଘାଟି ଉପରେ ଶତ୍ରୁ ପକ୍ଷର ନଜର ସବୁବେଳେ ରହିବ ଏବଂ ଏହି ସ୍ଥାନ ଆକ୍ରମଣର ଲକ୍ଷ୍ୟ ହେବ । ଏହା ଥରେ ଆକ୍ରମିତ ହେଲେ ଅବସ୍ଥା କ'ଣ ହେବ ? ହିରୋସିମା ଓ ନାଗାସାକିର ଅନୁଭୂତି ଠାରୁ ବଳି ପଡ଼ିବ ନାହିଁ କି ? ଏହାଛଡ଼ା ଭାରତ ତଥା ଓଡ଼ିଶା ଭଳି ଜାଗାରେ ଏଭଳି ପ୍ରକଳ୍ପ ବାର ବାର ଦୁର୍ଘଟଣାର ସମ୍ମୁଖୀନ ହେବ । ଏହି ଦୁର୍ଘଟଣାର ଭୟାବହତା ବହୁ ବିକାଶଶୀଳ ରାଷ୍ଟ୍ର ତଥା ପୃଥିବୀର ଦୁଇ ମହାଶକ୍ତି ଅନୁଭବ କରିସାରିଲେଣି । ଅତି ନିକଟରେ ଘଟି ଯାଇଥିବା ଋଷିଆର ଚେର୍ଣ୍ଣୋବିଲ୍ ଦୁର୍ଘଟଣା ସାରା ପୃଥିବୀରେ ଚହଳ ସୃଷ୍ଟି କରିଛି । ଭୋପାଳ ଦୁର୍ଘଟଣା ଆମର ଏବେର ଅଙ୍ଗେ ଲଭା ଘଟଣା । ଦ୍ୱିତୀୟ ବିଶ୍ୱଯୁଦ୍ଧ

ସମସ୍ତଙ୍କର ୧୯୪୫ ମସିହା ଅଗଷ୍ଟ ୬ତାରିଖରେ ଆମେରିକା ଯେତେବେଳେ ହିରୋସୀମା ଓ ନାଗାସାକି ଉପରେ ପରମାଣୁ ବୋମା (Atom-Bomb) ନିକ୍ଷେପ କଲା ତା'ର ଭୟାବହତା ବିଶ୍ବ ଆଖି ବୁଜି ଦେଇ ପାରିବ ନାହିଁ । ୧୯୬୭ ମସିହାରେ U. N. O. ରିପୋର୍ଟ ଅନୁଯାଇ ହିରୋସୀମାରେ ୭୮,୦୦୦ ଓ ନାଗାସାକିରେ ୨୭,୦୦୦ ଲୋକ ପ୍ରାଣ ହରାଇଥିଲେ । ଏବଂ ବର୍ତ୍ତମାନର ଅଧ୍ୟୟନରୁ ଜଣାଯାଏ ଯେ ବୋଧହୁଏ ଏହାର ଦୁଇଗୁଣ ଲୋକ ସଂଖ୍ୟା ସେତେବେଳେ ପ୍ରାଣ ହରାଇଛନ୍ତି । ଅନ୍ୟାନ୍ୟ କ୍ଷୟକ୍ଷତି କଥା ଛାଡ଼ । ଦୀର୍ଘ ୪୦ବର୍ଷ ପରେ ଆଣବିକ ଓ ପରମାଣବିକ ଅସ୍ତ୍ର ଶସ୍ତ୍ର ଆହୁରି ଜଟିଳ ଓ ମାରାତ୍ମକ ହୋଇ ପଡ଼ିଲେଣି । ଏହି ଅସ୍ତ୍ର ଶସ୍ତ୍ରର ଭୟାବହତା ସମ୍ପର୍କରେ ସାଥୀ ଗଣନାଥ ପାତ୍ର ତାଙ୍କର "ବାଲିଆପାଳରୁ ଡାକରା" ବହିରେ କିଛିଟା ଆଭାସ ଦେଇଛନ୍ତି ।

## ଓଡ଼ିଶାରେ ମାଲ ମାଲ ସାମରିକ ଘାଟୀ କାହିଁକି ?

ଓଡ଼ିଶା ଭଳି ଏକ ଅନୁନ୍ନତ ରାଜ୍ୟରେ ଯେଉଁଠାରେ କି ଜନଗଣ ବହୁ ଗରିବ, ବେକାର, ଅଶିକ୍ଷିତ, ବୁଭୁକ୍ଷୁ ସେ ପରିସ୍ଥିତିରେ ବାଲିଆପାଳ ଭଳି ଉନ୍ନତ, ଉର୍ବର, ଜନାକୀର୍ଣ୍ଣ ଅଞ୍ଚଳରେ ଜାତୀୟ ପରୀକ୍ଷାଞ୍ଚଳ ଭଳି ଭୟାଭୟ ଘାଟିକୁ କାହିଁକି ସ୍ଥାନ ଦିଆଗଲା ? ଓଡ଼ିଶା ଭଳି ଏକ ଖଣିଜ ସଂପଦଭରା, ଜଙ୍ଗଲଜାତ ସଂପଦଭରା ପ୍ରଦେଶରେ ଶିଳ୍ପୋଦ୍ୟୋଗମାନ ଗଢ଼ିବା ପରିବର୍ତ୍ତେ, ଓଡ଼ିଶା ଭଳି ଏକ ନଦୀ ବହୁଳ, ବୃଷ୍ଟି ବହୁଳ ଅଞ୍ଚଳରେ ଜଳଭଣ୍ଡାର ପ୍ରକଳ୍ପମାନ ଗଢ଼ି ଓଡ଼ିଶାକୁ ବନ୍ୟା ଓ ମରୁଡ଼ିରୁ ରକ୍ଷାକରି ଶସ୍ୟ ଶ୍ୟାମଳା କରିବା ପରିବର୍ତ୍ତେ ସମଗ୍ର ଓଡ଼ିଶାକୁ ସାମରିକ ଘାଟିରେ ପରିଣତ କରି [ କୋରାପୁଟ ଜିଲ୍ଲାର ସୁନାବେଡ଼ାରେ ମିଗ୍ ବିମାନ କାରଖାନା, ଗଞ୍ଜାମ ଜିଲ୍ଲାର ଗୋପାଳପୁରରେ ନୌସେନା କେନ୍ଦ୍ର, ପୁରୀ ଜିଲ୍ଲାର ଚିଲିକା କୂଳରେ ନୌବାହିନୀ ତାଲିମ କେନ୍ଦ୍ର, କଟକ ଜିଲ୍ଲାର ଚାରବାଟିଆରେ ଆକାଶ ବାହିନୀ ଘାଟି, ବାଲେଶ୍ବର ଜିଲ୍ଲାର ଚାନ୍ଦିପୁରରେ ପ୍ରୁଫ୍, ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟି, ମାଳଗିରିରେ ରାଡାର ସେଣ୍ଟର, ମୟୂରଭଞ୍ଜ ଜିଲ୍ଲାର ରାସ୍‌ଗୋବିନ୍ଦପୁରରେ ଏରୋଡ୍ରମର ପୁନନିର୍ମାଣ ଏବଂ ବଲାଙ୍ଗିର ଜିଲ୍ଲାର ସଇଁତଳା ଓ ରାମପୁରରେ ଗୋଳାବାରୁଦ କାରଖାନା ] ଭବିଷ୍ୟତରେ ଏହାକୁ ମରୁଭୂମିରେ ପରିଣତ କରିବାର ଯୋଜନାର ଉଦ୍ଦେଶ୍ୟ କ'ଣ ?

ବାଲିଆପାଳରେ କାହିଁକି ଜାତୀୟ ପରୀକ୍ଷାଞ୍ଚଳ କରାଗଲା ଉତ୍ତର ଦେବାକୁ ଯାଇ ଓଡ଼ିଶା ସରକାର ବ୍ୟକ୍ତ କରିଥିଲେ ଯେ ଜାତୀୟ ପରୀକ୍ଷାଞ୍ଚଳର ସ୍ଥାନ ନିରୂପଣ କରିବା ପୂର୍ବରୁ କ୍ଷେପଣାସ୍ତ୍ର ନିକ୍ଷେପ କରିବାର ଦିଗ, ଆନ୍ତର୍ଜାତୀୟ ସୀମା, ନିକଟସ୍ଥ ଜନଗଣଙ୍କର ନିରାପଦତା, ଅବସ୍ଥିତ ବନ୍ଦର ମାନଙ୍କର ନିରାପଦତା, ଜଳଜାହାଜର ମାର୍ଗ ତଥା ଜାତୀୟ ଓ ଆନ୍ତର୍ଜାତୀୟ ଉଡ଼ାଜାହାଜର ମାର୍ଗ ଭଳି ବହୁ ଗୁରୁତ୍ୱପୂର୍ଣ୍ଣ ବିଷୟ ବିଚାରକୁ ନିଆଯାଇଛି । ଭାରତ ସରକାରଙ୍କର ଏକ ବିଶେଷଜ୍ଞ କମିଟି ( Expert Committee ) ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜ, ଆନ୍ଧ୍ର ପ୍ରଦେଶ, କେରଳ, ତାମିଲନାଡୁ, ଗୁଜରାଟ, ରାଜସ୍ଥାନ, ପଶ୍ଚିମବଙ୍ଗ, ଏବଂ ଓଡ଼ିଶା ଆଦି ଜାଗାରେ ସ୍ଥାନ ମାନ ପରୀକ୍ଷା ନିରୀକ୍ଷା କରିଥିଲେ । ଶ୍ରୀ ହରିକୋଟା, କନ୍ୟାକୁମାରୀ, କୁଚର ରାନ୍, ରାଜସ୍ଥାନର ମରୁଭୂମୀ, ଦ୍ୱାରକା, ସାଗର ଦ୍ୱୀପ ପୁଞ୍ଜ, ସୁନ୍ଦର ବନ, କଟକର ସାତଭାୟା ଏବଂ ବାଲେଶ୍ୱରର ବାଲିଆପାଳ ଓ ଭୋଗରାଇ ଅଞ୍ଚଳ ପ୍ରଭୃତି ସ୍ଥାନ ଜାତୀୟ ପରୀକ୍ଷାଞ୍ଚଳର ସ୍ଥାନ ହିସାବରେ ଅଧ୍ୟୟନ ମଧ୍ୟ କରାଯାଇଥିଲା । ବିଶେଷଜ୍ଞ କମିଟିଙ୍କ ଦେଖିବାରେ ବାଲିଆପାଳ ଅଞ୍ଚଳ ଭାରତର ଏକମାତ୍ର ସ୍ଥାନ ଯାହାକି ଜାତୀୟ ପରୀକ୍ଷାଞ୍ଚଳ ପାଇଁ ଖୁବ୍ ଉପଯୋଗୀ । ଏହି ଅନୁସାରେ ଭାରତ ସରକାର ବାଲିଆପାଳ ଅଞ୍ଚଳରେ ଜାତୀୟ ପରୀକ୍ଷାଞ୍ଚଳ ସ୍ଥାପିତ କରିବା ପାଇଁ ସ୍ଥିର କଲେ ।

ଓଡ଼ିଶା ସରକାର ଯେଉଁ ଉପରୋକ୍ତ ବକ୍ତବ୍ୟ ଦେଲେ ତାହା କ'ଣ ସତ୍ୟ ? କଲିକତାର ଏକ ଖବର କାଗଜର ରିପୋର୍ଟରୁ ଜଣାଯାଏ ଯେ ଭାରତର ପ୍ରତିରକ୍ଷା ମନ୍ତ୍ରଣାଳୟ ସମସ୍ତ ସମୁଦ୍ର ଉପକୂଳ ବିଶେଷ କରି ଆନ୍ଧ୍ର, ଓଡ଼ିଶା ଓ ପଶ୍ଚିମ ବଙ୍ଗର ଉପକୂଳ ଅଞ୍ଚଳ ସର୍ବେକ୍ଷଣ କରିବା ସମୟରେ ଆନ୍ଧ୍ର ଓ ପଶ୍ଚିମ ବଙ୍ଗ ସରକାର ଏହି ପ୍ରକଳ୍ପରେ ରାଜି ହୋଇ ନଥିଲେ । ପରବର୍ତ୍ତୀ କାଳରେ ସମ୍ବାଦ ପତ୍ରରେ ପୁନଶ୍ଚ ପ୍ରକାଶ ପାଇଥିଲା ଯେ କର୍ଣ୍ଣାଟକ ସରକାର ମଧ୍ୟ ଏହି ପ୍ରକଳ୍ପରେ ରାଜି ହୋଇ ନଥିଲେ ।

ଧନ୍ୟ ଭାରତ ବର୍ଷର ଜାତୀୟ ସଂହତି । ଭାରତ ଯୁନିୟନର କେବଳ ସବଳ ଜାତିମାନେ ନେବେ ଉତ୍ପାଦନ କ୍ଷମ ନିଯୁକ୍ତି କାରୀ ପ୍ରକଳ୍ପ । ଆଉ ଓଡ଼ିଶା ଭଳି ଦୁର୍ବଳ ଜାତି ଭାଗରେ ପଡ଼ିବ ଖାଲି ମାଳ ମାଳ ସାମରିକ ଘାଟି । ଧନ୍ୟ ଭାରତ ବର୍ଷର 'ସ୍ୱାଧୀନତା ସଂଗ୍ରାମର' ସମୁଦ୍ର ମନ୍ଥନ ! ଦେବ ଶ୍ରେଣୀୟ ସବଳ

ଜାତିମାନେ ଯେବେ ଲକ୍ଷ୍ମୀ,ଚନ୍ଦ୍ର ଇତ୍ୟାଦି । ଆଜି ଅସୁର ଶ୍ରେଣୀଯ଼ ଦୁର୍ବଳ ଜାତି ଭାଗ୍ୟରେ ହୁଏତ କିଛି ପଡ଼ିବ ନାହିଁ କିମ୍ବା ଯଦି ପଡେ଼ ତେବେ ସାମରିକ ଘାଟିର ହଳାହଳ ବିଷ । ଆଜି ନୀଳକଣ୍ଠ ଓଡ଼ିଶା ଏହାକୁ ସାଦରେ ଗ୍ରହଣ କରନେବ ତେବେ ଏ ଯାତର ଅନ୍ତର କାହିଁକି ? ବନ୍ଧୁ କ୍ଷେପଣାସ୍ତ୍ର ଘାଟି ବିରୋଧୀ ସଭାରେ ସମ୍ମାନୀୟ କବି ବ୍ରଜନାଥ ରଥଙ୍କ କେତୋଟି ମୂଲ୍ୟବାନ ଉକ୍ତି ଉଲ୍ଲେଖ ଯୋଗ୍ୟ । ତାଙ୍କ ମତରେ ଯେହେତୁ ଓଡ଼ିଶାରେ ଏ ଜାତିର ସରକାର ନିଷ୍କ୍ରିୟ, ଏ ଜାତିର ବୁଦ୍ଧିଜୀବୀ ଭୟାର୍ତ୍ତ, ଏ ଜାତିର ଛାତ୍ର-ଯୁବକ ଶିଥିଳ ଏବଂ ଏ ଜାତିର ଜନଗଣ ଅଜ୍ଞ ତେଣୁ ଏ ଜାତି ଉପରେ ଭାରତ ସରକାର ସମସ୍ତ ବିପଦକୁ ଲଦିଦେବା ଅସ୍ୱାଭାବିକ ନୁହେଁ ।

ଓଡ଼ିଶାକୁ ସାମରିକୀକରଣ କରିବା ଏକ ଜାତିଗତ ସମସ୍ୟା ଏବଂ ଓଡ଼ିଶା ଜାତୀୟ ସମସ୍ୟାର ଏକ ଅଂଶ ବୋଲି କହିଲେ ଭୁଲ ହେବ ନାହିଁ । ଓଡ଼ିଶା ପ୍ରତି ଭାରତ ସରକାରଙ୍କର ସାବତମାଆ ବ୍ୟବହାର ଜାତୀୟ ନିପୀଡନ ମାତ୍ର ।

## ପୁସ୍ତକ ସମ୍ବନ୍ଧରେ—

ଯେତେବେଳେ ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟି ନେଇ ଓଡ଼ିଶାରେ ହଇଚଇ ଆରମ୍ଭ ହୁଏ ସେତେବେଳେ ମୁଁ ଟାଇଫଏଡ୍ ଜ୍ୱରରେ ଶଯ୍ୟାଶାୟୀ । ତା'ପରେ ବିଭିନ୍ନ ପ୍ରକାରର ରୋଗ ମୋତେ କୌଣସି କାର୍ଯ୍ୟ କରିବାପାଇଁ ସୁବିଧା ସୁଯୋଗ ଦେଲା ନାହିଁ । ଅନେକ ବ୍ୟକ୍ତିବିଶେଷ ହୋଇଛି ବାଲିଆପାଳ ଘାଟି ସଂପର୍କରେ କିଛି ଲେଖିବା ପାଇଁ । ଶେଷରେ ବହୁ ବିଳମ୍ବରେ ପୁସ୍ତକଟି ସଂପୂର୍ଣ୍ଣ ହୋଇଥିଲେ ବି ବାଲିଆପାଳ ତଥା ଓଡ଼ିଶା ସମସ୍ୟାର ଗୁରୁତ୍ୱ ଦୃଷ୍ଟିରୁ ଏହା ଅସାମୟିକ ନୁହେଁ ।

ପ୍ରଥମରେ ଭାବିଥିଲି ଓଡ଼ିଶାର ଜନସାଧାରଣ ବୁଝିଲା ଭଳି ପୁସ୍ତକଟିଏ ଲେଖିବି । କିନ୍ତୁ ବାଲିଆପାଳ ସମସ୍ୟା ଏତେ ଜଟିଳ ଓ ଏଥିରେ ଏତେ ପ୍ରଶ୍ନ ମାନ ଜଡ଼ିତ ଯେ ଜନସାଧାରଣ ବୁଝିଲା ଭଳି ଯଦି ଲେଖାହୁଏ ତେବେ ପୁସ୍ତକର କଳେବର ୧୦୦୦ ପୃଷ୍ଠାରୁ ଅଧିକ ହୋଇଯିବ । ତେଣୁ ଅର୍ଥ-ସାପେକ୍ଷ ଓ ସମୟ ସାପେକ୍ଷ ଦୃଷ୍ଟିରୁ ପାଠକମଣ୍ଡଳୀର ପରିସରକୁ ସଙ୍କୁଚିତ କରିବାକୁ ବାଧ୍ୟ ହେଲି । ତେଣୁ ଲେଖାଟି ପ୍ରାୟ ବୁଦ୍ଧିଜୀବୀ ତଥା ଛାତ୍ରଶ୍ରେଣୀ

ପାଇଁ ସୀମିତ ରହିଲା । ଏହାର ଅର୍ଥ ନୁହେଁ ଯେ ଜନସାଧାରଣ ଏହାକୁ ପଢ଼ିଲେ ଆଦୌ ବୁଝି ପାରିବେ ନାହିଁ କିମ୍ବା ଛାତ୍ର ବା ବୁଦ୍ଧିଜୀବୀ ମାନେ ପଢ଼ିଲେ ସବୁଟା ବୁଝିପାରିବେ । ରାଜନୈତିକ ତଥା ସାମାଜିକ ଚେତନାର ସ୍ତର ନେଇ ସମସ୍ତେ ସେହି ଅନୁପାତରେ ବୁଝିବେ । ମୋର ବୁଦ୍ଧିଜୀବୀମାନଙ୍କୁ ବିନମ୍ର ଅନୁରୋଧ ଯେ ମୁଁ ଯାହା ଏଠାରେ ପାରନାହିଁ ସେ କାର୍ଯ୍ୟ ସେମାନେ ସଂପାଦନ କରିବେ । ଅର୍ଥାତ ଏହି ପୁସ୍ତକଟିରୁ ସେମାନେ ଯାହା ଉପଲବ୍ଧି କରିବେ ତାହା ଯଦି ଓଡ଼ିଶାବାସୀଙ୍କର ହିତ ପାଇଁ ପ୍ରୟୋଜନ ବୋଲି ସେମାନେ ବିବେଚନା କରନ୍ତି ତେବେ ସେମାନେ ଜନସାଧାରଣଙ୍କ ପାଖରେ ଏହି ପୁସ୍ତକଟିର ବାର୍ତ୍ତା ପହଞ୍ଚାଇବେ ବୋଲି ମୋର ଆଶା ।

ବାଲିଆପାଳ ଉପରେ ତ ବହୁତ କିଛି ଲେଖିବାର ଥିଲା । କିନ୍ତୁ କାହାକୁ ଲେଖିବି ଓ କାହାକୁ ବାଦ ଦେବି ସେ ନେଇ ମୁଁ ଅନେକ ଦ୍ୱନ୍ଦ୍ୱରେ ପଡ଼ିଛି । ମୋ ପୂର୍ବରୁ ବହୁ ଲେଖକ ବୁଦ୍ଧିଜୀବୀ ଓ ରାଜନୀତିଜ୍ଞମାନେ ବାଲିଆପାଳ ଉପରେ ସେମାନଙ୍କର ଅନେକ ବିଶ୍ଳେଷଣ, ମନ୍ତବ୍ୟ ଆଦି ଦେଇସାରିଛନ୍ତି । ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟି ହେଲେ ବାଲିଆପାଳ ଜନଗଣଙ୍କ ଅର୍ଥନୈତିକ, ସାଂସ୍କୃତିକ ଓ ସାମାଜିକ ସମସ୍ୟାରେ ଉପନୀତ ହେବେ ସେ ସଂପର୍କରେ ପ୍ରାୟ ସମାନ ମତାମତ ଦେଇ ସାରିଛନ୍ତି । ପୁନଶ୍ଚ, କ୍ଷେପଣାସ୍ତ୍ର ଯେ ବହୁ ଦୂରଗାମୀ ହେବ ଓ ଏହାର ଓଡ଼ିଶା ତଥା ମାନବସମାଜ ପ୍ରତି ଧ୍ୱଂସକାରୀ କ୍ଷମତା ଅତି ସାଂଘାତିକ ହେବ ସେ ସମ୍ପର୍କରେ ମଧ୍ୟ ପ୍ରାୟ ସମାନ ମତାମତ ଦିଆ ସରିଛି । ତେଣୁ, ଏ ସମସ୍ତ ଉପରେ ପୁନରାବୃତ୍ତି କରିବା ପାଇଁ ମୁଁ ବିଶେଷ ଉଚିତ୍ ମନେକରୁ ନଥିଲି । କିନ୍ତୁ, କେତେକ ଶୁଭକାଂକ୍ଷୀ ବନ୍ଧୁ ମନ୍ତବ୍ୟ ଦେଲେ ଯେ ଏ ସମସ୍ତଙ୍କୁ ବାଦ ଦେଲେ ଏହା ପୂର୍ଣ୍ଣାଙ୍ଗ ହେବ ନାହିଁ । ତେଣୁ ଏ ସଂପର୍କରେ କିଛିଟା ସୂଚନା ଦେବାପାଇଁ ସ୍ଥିର କରି ମୁଖବନ୍ଧର ପ୍ରାରମ୍ଭରେ ଏ ସମସ୍ତ ଉଲ୍ଲେଖ କଲି ।

ବାଲିଆପାଳର ସମସ୍ୟା ଯେ ଖାଲି ମାନବିକ ସମସ୍ୟା ତାହା ନୁହେଁ, ଏହା ଏକ ରାଜନୈତିକ ସମସ୍ୟା ମଧ୍ୟ । ଏହି ରାଜନୈତିକ ପ୍ରଶ୍ନ ଉପରେ ବାମପନ୍ଥୀ ପାର୍ଟି ସମେତ ବିଭିନ୍ନ ରାଜନୈତିକ ପାର୍ଟି ସେମାନଙ୍କର ମତାମତ

ଦେଇ ଯାଇଛନ୍ତି । ସେମାନଙ୍କ ସହିତ ମୋର ମତୈକ୍ୟ ତଥା ମତ ବିରୋଧ ଅଛି । କିନ୍ତୁ ବାଲିଆପାଳର ସମସ୍ୟା ସହିତ ଓଡ଼ିଶାର ଜାତିଗତ ସମସ୍ୟା ଯେ ଓତଃପ୍ରୋତଃ ଭାବେ ଜଡ଼ିତ ଏ ସଂପର୍କରେ ମୋର ଯେତେଦୂର ମନେହୁଏ କୌଣସି ରାଜନୈତିକ ପାର୍ଟି ସ୍ପର୍ଶ କରି ନାହାନ୍ତି କିମ୍ବା ପ୍ରଶ୍ନ ଉଠାଇ ନାହାଁନ୍ତି । ତେଣୁ ଏହି ପୁସ୍ତକରେ ଜାତିଗତ ସମସ୍ୟା ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଛି ।

ଓଡ଼ିଶାର ଜାତୀୟ ଆନ୍ଦୋଳନ ଭାରତରେ ଘଟି ଆସୁଥିବା ଜାତୀୟ ଆନ୍ଦୋଳନଠାରୁ ଅଲଗା ନୁହେଁ । ଭାରତର ଜାତୀୟ ଆନ୍ଦୋଳନକୁ ଆଲୋଚନା କରିବାକୁ ଯାଇ ଭାରତ ବ୍ରିଟିଶ୍ ଶାସନାଧୀନ ଥିଲାବେଳେ ଏଠାରେ ବିଭିନ୍ନ ଜାତିର ଜାତୀୟ ସଚେତନତା ( **National consciousness**)ର କାହିଁକି ଓ କିପରି ଉଦ୍ରେକ ହେଲା, ଜାତୀୟ ଆନ୍ଦୋଳନର ନେତୃତ୍ୱ କେଉଁ ଶ୍ରେଣୀ କାହିଁକି ଓ କିପରି ନେଲା ଓ ପରିଶେଷରେ ଏହି ଜାତୀୟ ଆନ୍ଦୋଳନ କାହିଁକି ବାଧାପ୍ରାପ୍ତ ହେଲା ସେ ସଂପର୍କରେ ଏ ପୁସ୍ତକରେ ସମ୍ୟକ୍ ସୂଚନା ଦିଆ ଯାଇଛି । ସାମ୍ରାଜ୍ୟବାଦ ଯୁଗରେ ଜାତୀୟ ଆନ୍ଦୋଳନର ସଠିକ୍ ନେତୃତ୍ୱ ଯେ କେବଳ ଶ୍ରମିକ ଶ୍ରେଣୀ ଓ ତା'ର ଆଗୁଆ ବାହିନୀ କମ୍ୟୁନିଷ୍ଟ ପାର୍ଟି ଛଡ଼ା କେହି ନେଇ ପାରିବେ ନାହିଁ ଓ ଏହି ଗୁରୁଦାୟିତ୍ୱ ଭାରତର କମ୍ୟୁନିଷ୍ଟ ପାର୍ଟିମାନ କାହିଁକି ନେଇପାରି ନାହାଁନ୍ତି, ସେ ସଂପର୍କରେ ଆଲୋଚନା କରିବାକୁ ଯାଇ ଭାରତର କମ୍ୟୁନିଷ୍ଟ ଆନ୍ଦୋଳନର ଇତିହାସ ଓ ଏହାର ଆନ୍ତର୍ଜାତୀୟ କମ୍ୟୁନିଷ୍ଟ ଆନ୍ଦୋଳନ ସହିତ ସଂପର୍କ ଉପରେ କିଛିଟା ଆଲୋକପାତ ଏହି ପୁସ୍ତକରେ ଦିଆଯାଇଛି ।

ବର୍ତ୍ତମାନ ଭାରତର ବିଭିନ୍ନ ରାଜ୍ୟରେ ଚାଲିଆସୁଥିବା ଜାତୀୟ ଆନ୍ଦୋଳନ ବିରୁଦ୍ଧରେ ଯେଉଁ ଶାସକ ଓ ଶୋଷକ ଶ୍ରେଣୀ କେନ୍ଦ୍ର ସରକାରଙ୍କ ଜରିଆରେ "ଜାତୀୟ ସଂହତି"ର ଡାକରା ଦେଉଛନ୍ତି ସେହି ଶ୍ରେଣୀକୁ ବ୍ରିଟିଶ ସାମ୍ରାଜ୍ୟବାଦ କିପରି ଦଲାଲଭାବେ ଗଢ଼ିଥିଲା ଓ ସେହିଶ୍ରେଣୀ ହାତରେ ବ୍ରିଟିଶ୍ ଶକ୍ତି କିପରି ଗୋପନରେ ଭାରତର ଶାସନକୁ ନବ-ଉପନିବେଶ (**Neo-colony**)ରେ ପରିଣତ କରି ଚାଲିଗଲା ଏବଂ ସେହି ଶ୍ରେଣୀ କିପରି "ଜାତୀୟ ସଂହତି" ନାମରେ ଭାରତର ସମସ୍ତ ଜାତିକୁ ଶୋଷଣ କରି ନିଜେ ବଂଚୁଛି ଓ ତା'ର ପ୍ରଭୁ ବିଶ୍ୱ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କୁ ବଞ୍ଚାଉଛି ସେ ସଂପର୍କରେ

ଏହି ପୁସ୍ତକରେ କିଛିଟା ଆଭାସ ମଧ୍ୟ ଦିଆଯାଇଛି ।

ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟି ସାମ୍ରାଜ୍ୟବାଦଙ୍କ ସମ୍ଭାବ୍ୟ ଆକ୍ରମଣ କାହିଁକି ସେ ସଂପର୍କରେ କହିବାକୁ ଯାଇ ସର୍ବଭାରତୀୟ ଶାସକ ଶ୍ରେଣୀ କିଭଳି ଓଡ଼ିଶାଭଳି ଏକ ଦୁର୍ବଳ ଜାତିକୁ ଅର୍ଥନୈତିକ କ୍ଷେତ୍ରରେ ଶୋଷଣ କରି, ତା'ର ଭାଷାକୁ ସଙ୍କୁଚିତ କରି ତଥା ତା'ର ରାଜ୍ୟର କିଛି ଅଂଶକୁ ଛଡ଼ାଇ ରଖି କ୍ଷାନ୍ତ ହୋଇ ନାହିଁ ଏବଂ ପରିଶେଷରେ ଏହି ଶ୍ରେଣୀ ପଡ଼ୋଶୀ ଦେଶକୁ ଶୋଷଣ କରିବା ସକାଶେ ଆକ୍ରମଣ ଓ ଦମନ କରି ରଖିବା ପାଇଁ ଏହି ଓଡ଼ିଶାକୁ ଏକ ସାମରିକ ଘାଟି ଭାବେ ବ୍ୟବହୃତ କରି ଓଡ଼ିଶାକୁ କିପରି ଧ୍ୱଂସ ମୁଖକୁ ଠେଲି ଦେଉଛି ସେ ସମ୍ବନ୍ଧରେ ଏହି ପୁସ୍ତକରେ କିଛିଟା ଆଭାସ ଦିଆଯାଇଛି ।

ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟି ସମଗ୍ର ଓଡ଼ିଶାକୁ ସାମରିକୀ କରଣ କରିବାର ଏକ ଅଂଶ ବିଶେଷ । ଓଡ଼ିଶାକୁ ଯୁଦ୍ଧର ବିଭିଷିକାରୁ ରକ୍ଷା-କରିବାକୁ ହେଲେ ଓଡ଼ିଶାକୁ ସାମରିକ ଘାଟି-ମୁକ୍ତ କରିବାକୁ ପଡ଼ିବ । ପୁନଶ୍ଚ ବିନା ଓଡ଼ିଶା ଜାତୀୟ ମୁକ୍ତି ଆନ୍ଦୋଳନରେ ଓଡ଼ିଶା ସାମରିକ ଘାଟି ମୁକ୍ତ ହେବ ନାହିଁ । ଓଡ଼ିଶାକୁ ସାମରିକୀ କରଣ କରିବା ବିରୁଦ୍ଧରେ ଓଡ଼ିଶାବାସୀ-ଙ୍କର ସଂଗ୍ରାମ ଓଡ଼ିଶା ଜାତୀୟ ମୁକ୍ତି ସଂଗ୍ରାମର ଏକ ପର୍ଯ୍ୟାୟ । ଓଡ଼ିଶାର ଜାତୀୟ ମୁକ୍ତି ସଂଗ୍ରାମ ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମ ସହିତ ଜଡ଼ିତ ଭାବେ ଛନ୍ଦା । ତେଣୁ ଭାରତ ତଥା ଓଡ଼ିଶାରେ କେଉଁ ସାମ୍ରାଜ୍ୟବାଦୀ ଶକ୍ତିମାନେ ବିଚରଣ କରୁଛନ୍ତି, ସେମାନେ କିପରି ବିଚରଣ କରୁଛନ୍ତି ଓ ସେମାନଙ୍କ ମଧ୍ୟରେ ସଂପର୍କ କ'ଣ ସେ ବିଷୟରେ ଓଡ଼ିଶାବାସୀଙ୍କର କାହିଁକି ଜାଣିବା ଆବଶ୍ୟକ ଏ ସମ୍ବନ୍ଧରେ ମଧ୍ୟ କିଛିଟା ସୂଚନା ଦିଆଯାଇଛି ।

ବାଲିଆପାଳର କ୍ଷେପଣାସ୍ତ୍ର ଘାଟି ବିରୁଦ୍ଧରେ ତଥା ଓଡ଼ିଶାକୁ ସାମରିକ ଘାଟି-ମୁକ୍ତ କରିବା ପାଇଁ କେଉଁ ରାଜନୈତିକ ପାର୍ଟି ଅନ୍ତିମ ପର୍ଯ୍ୟାୟ ପର୍ଯ୍ୟନ୍ତ ନେତୃତ୍ୱ ନେଇ ପାରିବ ସେ ସଂପର୍କରେ ଆଲୋଚନା କରିବାକୁ ଯାଇ ଭାରତରେ ଥିବା ବିଭିନ୍ନ ରାଜନୈତିକ ପାର୍ଟିର ରାଜନୀତି ତଥା ଚରିତ୍ର ସମ୍ବନ୍ଧରେ ସମ୍ୟକ ସୂଚନା ଦିଆଯାଇଛି । ଅଧିକନ୍ତୁ, ଆହୁରି ସ୍ପଷ୍ଟ କରିବା ପାଇଁ, ଜର୍ମାନୀରେ ଚାଲିଥିବା ଏକ କ୍ଷେପଣାସ୍ତ୍ର ଘାଟି ବିରୋଧୀ ଆନ୍ଦୋଳନର

ଐତିହାସିକ ଉଦାହରଣ ମଧ୍ୟ ଏହି ପୁସ୍ତକରେ ଦିଆଯାଇଛି ।

ଓଡ଼ିଶାର ସାମ୍ରାଜ୍ୟବାଦ-ବିରୋଧୀ ଜାତୀୟ ମୁକ୍ତି ଆନ୍ଦୋଳନ ଶକ୍ତି-ଶାଳୀ ହେବା ପରିବର୍ତ୍ତେ ଏହା କପରି ଭବିଷ୍ୟତରେ ଏକ-ବିପ୍ଳବ ଗଠନ କରିବାର ପ୍ରକ୍ରିୟାକୁ ସାହାଯ୍ୟ କରିବ ସେ ସଂପର୍କରେ କିଛି ତାତ୍ତ୍ୱିକ ଆଭାସ ଦିଆଯାଇଛି । ପରିଶେଷରେ ବାଲିଆପାଳକୁ କେନ୍ଦ୍ର କରି କେତୋଟି ପ୍ରଶ୍ନ ଯଥା ପ୍ରତିରକ୍ଷା, ଗୋଷ୍ଠୀ ନିରପେକ୍ଷତା, ବିଶ୍ୱଶାନ୍ତି ଏବଂ ହିଂସା ବନାମ ଅହିଂସା ଆଦି ଯାହା ଉଠିଛି ଏ-ସଂପର୍କରେ କିଛି ଆଲୋଚନା ମଧ୍ୟ ଏହି ପୁସ୍ତକରେ କରାଯାଇଛି ।

ପାଠକମାନଙ୍କୁ ଅନୁରୋଧ ଯେ ଏହି ପୁସ୍ତକଟିର ବିଷୟବସ୍ତୁ ଉପରେ ଯଦି ସେମାନଙ୍କର ମତାମତ, ତର୍କ-ବିତର୍କ ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ତଥା ଉକ୍ତ ଲେଖକଙ୍କ ଦ୍ୱାରା ପ୍ରକାଶିତ ଓ ସଂପାଦିତ "ନୀଳଚାଚ୍ୟା" ପତ୍ରିକାରେ ଉପସ୍ଥାପିତ କରିପାରନ୍ତେ ତେବେ ଓଡ଼ିଶାବାସୀଙ୍କୁ ଏକ ସଠିକ୍ ଦିଗରେ ପରିଚାଳିତ କରାଯାଇ ପାରନ୍ତା ।

ବାଲିଆପାଳ ତଥା ଓଡ଼ିଶାର ବର୍ତ୍ତମାନ ଆଶୁ ସମସ୍ୟା ପାଇଁ ଆଲୋଚନା ଓ ତର୍କ-ବିତର୍କ ଆବଶ୍ୟକ । କିନ୍ତୁ ଏହା ଯଥେଷ୍ଟ ନୁହେଁ । ଏହି ସମସ୍ୟାର ସମାଧାନ କରିବାକୁ ହେଲେ ଓଡ଼ିଶା ବ୍ୟାପି ଗଣ ସଂଗଠନ ଆବଶ୍ୟକ । ଯେହେତୁ ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟି ଓଡ଼ିଶାକୁ ସାମରିକୀକରଣ କରିବାର ଏକ ଅଙ୍ଗ ବିଶେଷ ତେଣୁ ଏହି ଆନ୍ଦୋଳନକୁ ବାଲିଆପାଳ-କ୍ଷେପଣାସ୍ତ୍ର ଘାଟି-ବିରୋଧୀ ଆନ୍ଦୋଳନର ଗଣ୍ଡି ଭିତରେ ସୀମିତ ରଖିଲେ ଏହା ବ୍ୟାପକ ହୋଇ ପାରିବ ନାହିଁ । ତେଣୁ ଏହି ବାଲିଆପାଳ କ୍ଷେପଣାସ୍ତ୍ର ଘାଟି-ବିରୋଧୀ ଆନ୍ଦୋଳନକୁ ଓଡ଼ିଶା-ସାମରିକ ଘାଟି-ବିରୋଧୀ ଆନ୍ଦୋଳନକୁ ସଂପ୍ରସାରିତ କରିବାକୁ ହେବ । ତେଣୁ ଓଡ଼ିଶାର ଗ୍ରାମେ ଗ୍ରାମେ, ସହରେ ସହରେ ଏବଂ ଏହାର ପ୍ରତ୍ୟେକ କୋଣରେ ଓଡ଼ିଶା-ସାମରିକ ଘାଟି-ବିରୋଧୀ କମିଟିମାନ ଗଠନ କରିବା ପାଇଁ ଉକ୍ତ ଲେଖକ ପ୍ରସ୍ତାବ ଦେଉଛନ୍ତି । ଏହି କମିଟିର ସ୍ଲୋଗାନ **"ଓଡ଼ିଶାକୁ ସାମରିକ ଘାଟୀ ମୁକ୍ତ କର"**

ହେବା ପାଇଁ ମଧ୍ୟ ଲେଖକ ପ୍ରସ୍ତାବ ଦେଇଛନ୍ତି । ଏହି କମିଟି ଜରିଆରେ ସମଗ୍ର ଓଡ଼ିଶା ଏକ ହୋଇ କେନ୍ଦ୍ର ତଥା ରାଜ୍ୟ ସରକାରଙ୍କ ବିରୁଦ୍ଧରେ ସଂଗ୍ରାମ ଚଳାଇ ଏହି ସଂଗ୍ରାମରେ ସଫଳୀକୃତ ହେବାପାଇଁ ଲେଖକଙ୍କର କାମନା ।

**'ଲେଖକ'**
ତା ୫-୭-୮୭ ରିଖ

ଭାରତ ଏକ ଅନୁନ୍ନତ ଦେଶ । ତା' ମଧ୍ୟରେ ଓଡ଼ିଶା ଭଳି ଏକ ଅନୁନ୍ନତ ରାଜ୍ୟ । ଆଉ ଓଡ଼ିଶା ମଧ୍ୟରେ ବାଲିଆପାଳ । ଜାଣେନା ଇତିହାସ କେବେ ତା'ର କୋଳରେ ଏହି ଶାନ୍ତ ଅଂଚଳଟିକୁ ସ୍ଥାନ ଦେଇଛି କି କ'ଣ ? ହଠାତ୍ ଏକ ହଇଚଇ । ଲକ୍ଷାଧିକ ଜନଗଣଙ୍କର ବାସଚ୍ୟୁତ । କାରଣ ? 'ଭାରତର ପ୍ରତିରକ୍ଷା ପାଇଁ' ସୋଭିଏତ ରୁଷର ସହାୟତାରେ ଏକ କ୍ଷେପଣାସ୍ତ୍ର ଘାଟିର ଆବଶ୍ୟକ । "ଭାରତର ସ୍ୱାର୍ଥ" ପାଇଁ ବାଲିଆପାଳର ଜନଗଣଙ୍କୁ ତ୍ୟାଗ କରିବାକୁ ପଡ଼ିବ । ଅର୍ଥାତ୍ ଓଡ଼ିଶାକୁ ତ୍ୟାଗ କରିବାକୁ ପଡ଼ିବ, କାହିଁକି ?

ଏହି କାହିଁକିର ପ୍ରଶ୍ନକୁ ବୁଝିବା ପାଇଁ ଅତୀତ ଇତିହାସର ଏକ ପୁଂଖାନୁପୁଂଖ ବିଶ୍ଳେଷଣ ଯେ ଦରକାର ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ହେଲେ ପୁସ୍ତକର କଳେବରର ସୀମିତତାକୁ ଲକ୍ଷ ରଖି ଚୁମ୍ବକରେ ଥୋଇବାକୁ ଉଚିତ୍ ମନେ କରାଯାଉଛି ।

ଓଡ଼ିଶା କହିଲେ ଏକ ଆଧୁନିକ ଜାତି (Modern Nation) । ଆଉ ଆଧୁନିକ ଜାତି କହିଲେ ? ଏହା ଏକ ମଣିଷ ସମାଜ, ଯେଉଁ ସମାଜରେ ସର୍ବନିମ୍ନ ୪ଟି ଉପାଦାନ ଥିବା ଆବଶ୍ୟକ । ଯଥା : (୧) ଏକ ନିର୍ଦ୍ଦିଷ୍ଟ ସାଧାରଣ ଭାଷା (Common Language) । (୨) ଏକ ନିର୍ଦ୍ଦିଷ୍ଟ ସାଧାରଣ ସଂସ୍କୃତି (Common Culture) ଓ ମାନସିକତାର ଗଠନ (Psychological Make up) (୩) ଏକ ନିର୍ଦ୍ଦିଷ୍ଟ ସାଧାରଣ ଭୂଖଣ୍ଡ (Common Territory) ଯେଉଁଠାରେ କି ଏକ ଭାଷାଭାଷି ଓ ସଂସ୍କୃତିର ଲୋକ ହିଁ ପ୍ରାୟତଃ ବାସକରନ୍ତି । (୪) ଏବଂ ସର୍ବଶେଷରେ ଏକ ନିର୍ଦ୍ଦିଷ୍ଟ ସାଧାରଣ ପୁଂଜିବାଦୀ ଅର୍ଥ ବ୍ୟବସ୍ଥା ବା ବଜାର ବ୍ୟବସ୍ଥା (Common Economy ) ଯାହାକି ଏହି ଜନଗଣଙ୍କୁ ଗୋଟିଏ ସୂତାରେ ବାନ୍ଧି ରଖିଥାଏ ।

ଭାରତ କ'ଣ ଏକ ଆଧୁନିକ ଜାତି, (One Modern Nation) ? ଯଦି ଏକ ଆଧୁନିକ ଜାତି ତେବେ ଏହାର ନିର୍ଦ୍ଦିଷ୍ଟ ସାଧାରଣ ଭାଷା କ'ଣ ? ଏକ ନିର୍ଦ୍ଦିଷ୍ଟ ସାଧାରଣ ସଂସ୍କୃତି କ'ଣ ? ଭାରତ ଏକ ଭୂଖଣ୍ଡ ଯେଉଁ ଭୂଖଣ୍ଡରେ କି ବହୁ ଭାଷାଭାଷି ଏବଂ ସଂସ୍କୃତିର ଲୋକେ ବାସ କରନ୍ତି । ଠିକ୍ ଯେପରି ଏସିଆ ଏକ ଭୂଖଣ୍ଡ ଯେଉଁଥିରେ କି ଆହୁରି ବେଶି ଭାଷାଭାଷିର ଓ ଆହୁରି ବେଶି ସଂସ୍କୃତିର ଲୋକେ ବସବାସ କରନ୍ତି । ପୁନଶ୍ଚ, ଭାରତରେ ଏକ ପୁଂଜିବାଦୀ ଅର୍ଥନୀତି ଅଛି ଯାହାର ସଂପର୍କ ଭାରତ ବାହାରେ ଓ ଭାରତର ଭିତରେ ଛନ୍ଦାଛନ୍ଦି । ଠିକ୍ ଯେପରି ବିଶ୍ୱର ଅନ୍ୟାନ୍ୟ ଭୂଖଣ୍ଡ । ତେଣୁ ଭାରତ ଏକ ଆଧୁନିକ ଜାତି ନୁହେଁ (Not one

Modern Nation ) ଯେହେତୁ ଏହାର ଉପରୋକ୍ତ ୪ଟି ସର୍ବନିମ୍ନ ଉପାଦାନ ନାହିଁ । ବରଂ ଭାରତ ଏକ ଭୂଖଣ୍ଡ ଯେଉଁଥିରେ କି ବହୁ ଜାତିର ଜନଗଣ ନିଜ ନିଜ ଜାତୀୟ ରାଜ୍ୟରେ ବସବାସ କରୁଛନ୍ତି । ଅର୍ଥାତ ଭାରତ ଏକ ବହୁ ଜାତୀୟ ରାଜ୍ୟ ( Multi-National State ) । ଯଦି କେହି କହୁଥାଏ ଭାରତ ଏକ ଜାତି ତେବେ ସେ ହୁଏତ ଆଧୁନିକ ଜାତିର ସଂଜ୍ଞା ସମ୍ବନ୍ଧରେ ଅଜ୍ଞ କିମ୍ବା ବହୁଜାତୀୟ ସାମ୍ରାଜ୍ୟବାଦର ଏକ ଦଲାଲ ।

ସାମ୍ରାଜ୍ୟବାଦର ଦଲାଲ କଥାଟା ଯେତେବେଳେ ଉଲ୍ଲେଖ କରାଗଲା ସେତେବେଳେ ହୁଏତ ପାଠକମାନେ ବିସ୍ମିତ ହେଉଥିବେ କିମ୍ବା ଏହାକୁ ଭଲ ଭାବରେ ବୁଝିପାରୁ ନ ଥିବେ । ତେଣୁ ଭାରତର ଇତିହାସକୁ ସାମାନ୍ୟ ପର୍ଯ୍ୟାଲୋଚନା କରିବା ଦରକାର ପଡୁଛି । ଯାହା ଫଳରେ କି ଭାରତ କହିଲେ ବର୍ତ୍ତମାନ କ'ଣ ବୁଝାପଡେ ତାହା ଆମେ ପରିଷ୍କାର ରୂପେ ଜାଣି ପାରିବା ।

## ପ୍ରାକ୍ ବ୍ରିଟିଶ ଭାରତୀୟ ଅବସ୍ଥା :

ଆମେ ଯେଉଁ 'ଅଖଣ୍ଡ ଭାରତ'ର ସ୍ଲୋଗାନ ସବୁବେଳେ ମୁହଁରେ ଉଚ୍ଚାରଣ କରୁଥାଉ ଏଭଳି ଅବସ୍ଥା ଭାରତରେ କେବେ ନ ଥିଲା । ଡଚ୍, ଫରାସୀ, ବ୍ରିଟିଶ ଇତ୍ୟାଦି ପାଶ୍ଚାତ୍ୟ ଶକ୍ତିମାନେ ଏ ଦେଶକୁ ଆସିବା ପୂର୍ବରୁ ଭାରତ ଖଣ୍ଡ ବିଖଣ୍ଡିତ ଥିଲା । ପଠାଣ କିମ୍ବା ମୋଗଲ ସମ୍ରାଟମାନେ ଶତଚେଷ୍ଟା କରି ମଧ୍ୟ ଭାରତକୁ ଏକ ଶାସନାଧୀନ ରଖିପାରି ନ ଥିଲେ । ମୋଗଲ ସମ୍ରାଟ ଓ ହିନ୍ଦୁ ରାଜାଙ୍କ ମଧ୍ୟରେ ଅହରହ ସଂଘର୍ଷ ଏବଂ ହିନ୍ଦୁ ରାଜାମାନଙ୍କର ନିଜ ନିଜ ମଧ୍ୟରେ ସଂଘର୍ଷ ଭାରତକୁ ଟୁକୁରା ଟୁକୁରା କରି ରଖିଥିଲା । ଭାରତ ଏକ ଆଧୁନିକ ଜାତୀୟ ରାଜ୍ୟ କିମ୍ବା ବହୁ ଆଧୁନିକ ଜାତୀୟ ରାଜ୍ୟର ସମଷ୍ଟି ଭାବେ ବି ନ ଥିଲା । କାରଣ ଏକ ଆଧୁନିକ ଜାତୀୟ ରାଜ୍ୟ ଭାବରେ ଗଢି ଉଠିବା ପାଇଁ ଯେଉଁ ଉପରୋକ୍ତ ୪ଟି ଉପାଦାନ ଦରକାର ସେ ସମସ୍ତ ଉପାଦାନର ବିକାଶ ଘଟି ନ ଥିଲା । ସେତେବେଳେ ଭାରତର ବିଭିନ୍ନ ପ୍ରାନ୍ତରେ କେବଳ ୩ଟି ମାତ୍ର ଉପାଦାନ ପରିଲକ୍ଷିତ ହେଉଥିଲା । ଯଥା— (୧) ବିଭିନ୍ନ ପ୍ରକାରର ପ୍ରାନ୍ତୀୟ ଭାଷାର ବିକାଶ ଘଟିଥିଲା । (୨) ବିଭିନ୍ନ ପ୍ରାନ୍ତରେ ବିଭିନ୍ନ ପ୍ରକାରର ପ୍ରାନ୍ତୀୟ ସଂସ୍କୃତି ଓ ମାନସିକ ବନ୍ଧନର ବିକାଶ ଘଟିଥିଲା । (୩) ନିର୍ଦ୍ଦିଷ୍ଟ ଭାଷାଭାଷୀ ଓ ନିର୍ଦ୍ଦିଷ୍ଟ ସଂସ୍କୃତିର ଜନଗଣଙ୍କୁ ନେଇ ବିଭିନ୍ନ ନିର୍ଦ୍ଦିଷ୍ଟ ପ୍ରାନ୍ତମାନ ଗଢି ଉଠିଥିଲା । କିନ୍ତୁ ଗୋଟିଏ ମାତ୍ର ଉପାଦାନର ଅଭାବରୁ ଆଧୁନିକ ଜାତୀୟ ଚେତନାର ଉଦ୍ରେକ ଘଟି ନ ଥିଲା । ସେ ଉପାଦାନଟି ହେଲା ପୁଞ୍ଜିବାଦୀ ଅର୍ଥନୀତି ଭିତ୍ତିକ ବଜାର ବ୍ୟବସ୍ଥା । ୟୁରୋପ ମହାଦେଶରେ ଯେତେବେଳେ ପୁଞ୍ଜିବାଦୀ ଅର୍ଥ ବ୍ୟବସ୍ଥା ଦେଖାଦେଲା ,ଓ ଏହି ଅର୍ଥନୀତିକୁ ଭିତ୍ତିକରି ବଡ଼ ବଡ଼ ବଜାରମାନ ସୃଷ୍ଟି ହେଲା ଏହି ମହାଦେଶରେ ଜାତୀୟ ଆନ୍ଦୋଳନ ତୀବ୍ର ହେଲା । ଫଳରେ ୟୁରୋପରେ ବହୁ ସ୍ୱାଧୀନ ଜାତୀୟ ରାଜ୍ୟର ସୃଷ୍ଟି ହେଲା ।

ଏହି ବଜାର ବ୍ୟବସ୍ଥା ଆଧୁନିକ ଜାତୀୟ ଚେତନାର ଉଦ୍ରେକ ପାଇଁ କାହିଁକି ଏତେ ଜରୁରୀ ? ପୁଂଜିବାଦୀ ଅର୍ଥନୀତିରେ ପୂର୍ବ ଅବସ୍ଥା ହେଉଛି ଗ୍ରାମୀଣ ଅର୍ଥନୀତି ବ୍ୟବସ୍ଥା । ଏହି ବ୍ୟବସ୍ଥାର ଲକ୍ଷଣ ହେଉଛି ପ୍ରତ୍ୟେକ ଗ୍ରାମ ଆତ୍ମନିର୍ଭରଶୀଳ । ଗୋଟିଏ ଗ୍ରାମ ନିଜର ଜୀବନ ଯାପନ ପାଇଁ ଅନ୍ୟ ଗ୍ରାମ ଉପରେ ନିର୍ଭର କରେ ନାହିଁ । ତେଣୁ ଗ୍ରାମ ଓ ଗ୍ରାମମାନଙ୍କ ମଧ୍ୟରେ ସଂପର୍କ ଘନିଷ୍ଠ ନୁହେଁ । ତେଣୁ ଯଦିଓ ଗୋଟିଏ ପ୍ରାନ୍ତରରେ ଗୋଟିଏ ନିର୍ଦ୍ଦିଷ୍ଟ ସାଧାରଣ ଭାଷାଭାଷି ଓ ନିର୍ଦ୍ଦିଷ୍ଟ ସାଧାରଣ ସଂସ୍କୃତିର ଲୋକେ ବସବାସ କରୁଥାନ୍ତି ତଥାପି ଏହି ଜନଗଣଙ୍କ ମଧ୍ୟରେ ସଂପର୍କ ଘନିଷ୍ଠ ନ ଥାଏ । ଯାହା ଫଳରେ ଏମାନଙ୍କ ମଧ୍ୟରେ ଏକ ଆଧୁନିକ ଜାତୀୟ ଚେତନା ବଳବତ୍ତର ନ ଥାଏ । କିନ୍ତୁ ଯେତେବେଳେ ଗ୍ରାମୀଣ ଅର୍ଥ ବ୍ୟବସ୍ଥା ବଦଳିରେ ଏକ ପୁଂଜିବାଦୀ ଅର୍ଥବ୍ୟବସ୍ଥା ଦେଖାଦିଏ ସେତେବେଳେ ହାଟ, ବଜାର ମାନ ଦେଖାଦିଏ । ଏପରି କି ବଡ଼ ବଡ ବଜାରମାନ ଦେଖାଦିଏ । ଏହି ହାଟ ବଜାରକୁ ପାଖାପାଖି ଗ୍ରାମ୍ୟାଞ୍ଚଳରୁ ଲୋକମାନେ ଅଦରହି ଆସନ୍ତି । ଲୋକ ମାନଙ୍କ ମଧ୍ୟରେ କିଣାବିକା କାର୍ଯ୍ୟ ଆରମ୍ଭ ହୁଏ ଏବଂ ଏମାନଙ୍କ ମଧ୍ୟରେ ସଂପର୍କ କ୍ରମଶଃ ଘନିଭୂତ ହୁଏ । ଏହି ଭଳି ପ୍ରକ୍ରିୟାରେ ଶ୍ରେଷ୍ଠ, ବଡ଼ ବଜାରମାନ ଗୋଟିଏ ପ୍ରାନ୍ତରରେ ବସବାସ କରୁଥିବା ଗୋଟିଏ ଭାଷାଭାଷି ଓ ସଂସ୍କୃତିର ଲୋକଙ୍କୁ ଏକ ସୂତାରେ ବାନ୍ଧିରଖେ । ତେଣୁ ଏମାନଙ୍କ ମଧ୍ୟରେ ଏକ ବଳିଷ୍ଠ ଜାତୀୟ ଚେତନା ଗଢି ଉଠେ ।

ପାଶ୍ଚାତ୍ୟ ଶକ୍ତିମାନେ ଭାରତକୁ ଆସିବା ପୂର୍ବରୁ ଭାରତର ଅର୍ଥ ବ୍ୟବସ୍ଥା ପ୍ରାୟତଃ ଗ୍ରାମୀଣ ଅର୍ଥବ୍ୟବସ୍ଥା ଦ୍ୱାରା ପରିଚାଳିତ ଥିଲା । ଯଦିଓ ପୁଂଜିବାଦୀ ଅର୍ଥ ବ୍ୟବସ୍ଥାର ଭ୍ରୁଣ ବିଭିନ୍ନ ପ୍ରାନ୍ତରରେ ଦେଖା ଦେଉଥିଲା । ଯଦି ପାଶ୍ଚାତ୍ୟ ଶକ୍ତିମାନେ ଏହି ସମୟରେ ପ୍ରବେଶ କରି ନ ଥାନ୍ତେ, ତେବେ ଏହି ପୁଂଜିବାଦୀର ଭ୍ରୁଣ ଅବସ୍ଥା ଏକ ପରିପକ୍ୱ ପୁଂଜିବାଦୀ ଅର୍ଥବ୍ୟବସ୍ଥାକୁ ଗଠନ କରିଥାନ୍ତା ଏବଂ ବିଭିନ୍ନ ପ୍ରାନ୍ତରରେ ଶ୍ରେଷ୍ଠ ବଡ ହାଟ, ବଜାରମାନ ଗଢି ଉଠିଥାନ୍ତା । ସେତେବେଳେ ଯେହେତୁ ବିଭିନ୍ନ ପ୍ରାନ୍ତରରେ ବିଭିନ୍ନ ନିର୍ଦ୍ଦିଷ୍ଟ ଭାଷାଭାଷି ଓ ନିର୍ଦ୍ଦିଷ୍ଟ ସଂସ୍କୃତିର ବିକାଶ ଘଟିଥିଲା ଏହି ବଜାର ବ୍ୟବସ୍ଥାର ସଂଯୋଗ ଫଳରେ ବିଭିନ୍ନ ପ୍ରାନ୍ତରରେ ବିଭିନ୍ନ ଆଧୁନିକ ଜାତୀୟ ଚେତନାର ଉଦ୍ରେକ ଘଟିଥାନ୍ତା । ଏହି ଆଧୁନିକ ଜାତୀୟ ଚେତନାର ଉଦ୍ରେକ ଫଳରେ ଭାରତ ବର୍ଷ ୨ଟି ସମ୍ଭାବ୍ୟ ପଥରେ ଗତି କରିଥାନ୍ତା ।

(୧) ଭାରତ ବର୍ଷ ୟୁରୋପ ଭଳି ବହୁ ସ୍ୱାଧୀନ ଜାତୀୟ ରାଜ୍ୟରେ ବିଭକ୍ତ ହୋଇଥାନ୍ତା କିମ୍ବା (୨) ବିଭିନ୍ନ ରାଜ୍ୟର ଜାତୀୟ ପୁଞ୍ଜିପତିମାନଙ୍କ ପ୍ରତିଯୋଗିତା ଫଳରେ ଏକ ବଳଶାଳୀ ଜାତିର ଆବିର୍ଭାବ ଘଟିଥାନ୍ତା ଏବଂ ଏହି ବଳଶାଳୀ ଜାତି ଅନ୍ୟାନ୍ୟ ଦୁର୍ବଳ ଜାତିକୁ ଜବରଦସ୍ତ ନିଜ ଅଧୀନରେ ରଖି ଏକ ବହୁ ଜାତୀୟ ରାଜ୍ୟ (Multi National State) ସୃଷ୍ଟି କରିଥାନ୍ତା । କିନ୍ତୁ ଭାରତ ବର୍ଷରେ

ପାଶ୍ଚାତ୍ୟ ଶକ୍ତିର ହସ୍ତକ୍ଷେପ ଯୋଗୁଁ ଭାରତ ଇତିହାସର ଗତିପଥ ଏକ ଭିନ୍ନ ମୋଡ଼ନେଲା ।

## ବ୍ରିଟିଶ ଅଧୀନସ୍ଥ ଭାରତ ବର୍ଷ :

ପଶ୍ଚିମ ୟୁରୋପରେ ଶିଳ୍ପ ବିପ୍ଳବ, ପୁଂଜିବାଦର ବିକାଶ, ପୁଂଜିବାଦ ବ୍ୟବସ୍ଥାରେ ଉତ୍ପନ୍ନ ସାମଗ୍ରୀର ବିକ୍ରୟ ପାଇଁ ବାହାର ଦେଶରେ ବଜାର ଖୋଜା ଓ ବଜାର ପାଇଁ ପ୍ରତିଯୋଗିତା ଡଚ୍, ଫରାସୀ ଓ ଇଂରେଜ ଶକ୍ତିକୁ ଭାରତକୁ ଟାଣିଆଣି ଥିଲା । ଭାରତ ଭୂଖଣ୍ଡରେ ପାଶ୍ଚାତ୍ୟ ଶକ୍ତିମାନଙ୍କର ପ୍ରତିଯୋଗିତାରେ ଇଂରେଜ ମାନେ ହିଁ ଜୟଲାଭ କରିଥିଲେ ।

ଇଂରେଜମାନେ ଦେଖିଲେ ଯେ ଭାରତକୁ ଏହାର ବଜାରରେ ପରିଣତ କରିବାକୁ ହେଲେ ଭାରତର ରାଜନୈତିକ କ୍ଷମତାକୁ ନିଜ ହାତରେ ରଖିବାକୁ ହେବ । ତେଣୁ ପ୍ରାୟ ଏକ ଶତବର୍ଷର ରକ୍ତାକ୍ତ ସଂଘର୍ଷ ଜରିଆରେ ସମସ୍ତ ଭାରତୀୟ ରାଜାଂକୁ ପରାସ୍ତ କରି, ଅନେକଙ୍କୁ ହତ୍ୟାକରି ଓ କେତେକଙ୍କୁ ଅଧୀନସ୍ଥ କରି ସମଗ୍ର ଭାରତର ରାଜନୈତିକ କ୍ଷମତାକୁ ନିଜ ହାତ ମୁଠାରେ ରଖିଲେ । ଭାରତକୁ ନିଜର ସଂପୂର୍ଣ୍ଣ ଉପନିବେଶରେ ପରିଣତ କଲେ ।

ସେମାନେ, ପ୍ରତିଷ୍ଠା ଆରମ୍ଭ କଲେ ତାଙ୍କର ଅନ୍ୟ ଏକ ଶତାବ୍ଦୀର ଉପନିବେଶିକ ଶାସନ । ଯେଉଁ ଶାସନରେ କି. ବିଭିନ୍ନ ପ୍ରାନ୍ତରର ବିଭିନ୍ନ ଭାଷାଭାଷି ବିଭିନ୍ନ ସଂସ୍କୃତିର ଜନଗଣ ଏକ-ଶାସନର ଘଣାରେ ପେଷି ହୋଇ ରହିଲେ । ଭାରତର ବିଭିନ୍ନ ପ୍ରାନ୍ତରରେ ବିଭିନ୍ନ ଆଧୁନିକ ଜାତିର ବିକାଶ (ଓଡ଼ିଆ, ତେଲଗୁ, ବଙ୍ଗାଳୀ, ଗୁଜରାଟୀ, ତାମିଲ, ମରହଟ୍ଟୀ ଇତ୍ୟାଦି ) ଯାହା ସ୍ୱାଧୀନ ଭାବେ ଗଢ଼ି ଉଠିଥାନ୍ତା ତାହା ବାଧାପ୍ରାପ୍ତ ହେଲା ।

ଇଂରେଜମାନେ ତାଙ୍କ ଦେଶର ଜିନିଷ ଭାରତରେ ବିକ୍ରୟ କରିବା ପାଇଁ ଭାରତରେ ଉତ୍ପନ୍ନ ହେଉଥିବା ଜିନିଷର ଉତ୍ପାଦନ ପ୍ରକ୍ରିୟାକୁ ପ୍ରାୟତଃ ସଂପୂର୍ଣ୍ଣ ଧ୍ୱଂସକଲେ । ଅର୍ଥାତ ଭାରତକୁ ବେଶିଳ୍ପିକରଣ ( De-industrialisation ) କଲେ । ଭାରତରେ ତାଙ୍କ ଜିନିଷ ବିକ୍ରୟ କରିବା ପାଇଁ ସର୍ବଭାରତୀୟ ବଜାରମାନ ସୃଷ୍ଟି କଲେ । ଭାରତର ବିଭିନ୍ନ ପ୍ରାନ୍ତରରେ ତାଙ୍କର ଜିନିଷ ବିକ୍ରୟ କରିବା ଏବଂ ବିଭିନ୍ନ ପ୍ରାନ୍ତରରୁ କଞ୍ଚାମାଲ ନିଜ ଦେଶକୁ ବୋହିନେବା ପାଇଁ ରାସ୍ତାଘାଟ ରେଳପଥ ଆଦି ନିର୍ମାଣ କଲେ । ସାରା ଭାରତ ଏକ ଶାସନ କଳ ଓ ଏକ ବଜାର ବ୍ୟବସ୍ଥାରେ ନିୟନ୍ତ୍ରିତ ହେଲା । ହେଲେ ଏହି ଶାସନ ବିଭିନ୍ନ ଭାଷାଭାଷି ଓ ବିଭିନ୍ନ ସଂସ୍କୃତିର ଲୋକଙ୍କୁ ଏକ ଭାଷି ଏକ ସଂସ୍କୃତିର ଜନଗଣ ରୂପେ ପରିଣତ କରିପାରି ନ ଥିଲା ।

ତେଣୁ ଭାରତରେ ବହୁ ଆଧୁନିକ ଜାତୀୟ-ରାଜ୍ୟର ବିକାଶ ପାଇଁ ଭାଜ ଆଗାମୀ ଦିନର ଅଙ୍କୁରୋଦ୍‌ଗମ ଅବସ୍ଥାକୁ ଅପେକ୍ଷା କରି ରହିଲା ।

ବିଶ୍ୱ ପୁଂଜିବାଦର ଗତି ପ୍ରକ୍ରିୟା ଅତି ବିଚିତ୍ର । ଯେତେବେଳେ ଊନବିଂଶ ଶତାବ୍ଦୀର ଶେଷ ଭାଗ ଓ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ବିଶ୍ୱର ପୁଂଜିବାଦ ଏକଚାଟିଆ ପୁଂଜିବାଦକୁ ଗତିକଲା । ଅର୍ଥାତ ପୁଂଜିବାଦ ସାମ୍ରାଜ୍ୟବାଦକୁ ଗତି କଲା ଏବଂ ବିଶ୍ୱବଜାର ଦଖଲ ପାଇଁ ବିଭିନ୍ନ ସାମ୍ରାଜ୍ୟବାଦୀ ଦେଶମାନଙ୍କ ମଧ୍ୟରେ ତୀବ୍ର ପ୍ରତିଯୋଗିତା ଆରମ୍ଭ ହୋଇଗଲା, ସେତେବେଳେ ଏହି ସାମ୍ରାଜ୍ୟବାଦୀ ଦେଶମାନେ ସେମାନଙ୍କର ପଣ୍ୟ (commodity)ର ଉତ୍ପାଦନ ଖର୍ଚ୍ଚ ସଙ୍କୋଚନ କରିବା ପାଇଁ ଉପାୟ ଖୋଜିଲେ । ସେମାନେ ଉପଲବ୍ଧି କଲେ ଯେ ଯଦି ସେମାନେ ସେମାନଙ୍କର ଉପନିବେଶ ଦେଶମାନଙ୍କରେ ଉତ୍ପାଦନ କାର୍ଯ୍ୟ ଆରମ୍ଭ କରନ୍ତି ତେବେ ସେମାନେ ଶସ୍ତା-ଶ୍ରମ (ନିଜ ଦେଶ ତୁଳନାରେ) ଓ ଶସ୍ତା କଞ୍ଚାମାଲ ଉତ୍ପାଦନ କ୍ଷେତ୍ରର ଅତି ନିକଟରେ ପାଇ ପାରିବେ ଏବଂ ସେମାନଙ୍କର ପଣ୍ୟର ଉତ୍ପାଦନ ଖର୍ଚ୍ଚ ବହୁ ଗୁଣରେ କମିଯିବ । ତେଣୁ ସେମାନେ ଯେଉଁ ଉପନିବେଶକୁ ପ୍ରଥମରେ ବେଶିଲୁଣ୍ଠନ କରିଥିଲେ-ସେହି ଉପନିବେଶମାନଙ୍କୁ ଶିଳ୍ପକରଣ ( Industrialisation ) କଲେ । ଭାରତ ବର୍ଷ ଏଥିରୁ ବାଦଗଲା ନାହିଁ । ଇଂରେଜମାନେ ପ୍ରାୟ ଊନବିଂଶ ଶତାବ୍ଦୀର ୭ମ ଦଶକରେ ଭାରତକୁ ଶିଳ୍ପକରଣ କରିବାକୁ ଆରମ୍ଭ କଲେ । ଅର୍ଥାତ ଭାରତର ବିଭିନ୍ନ ବଡ଼ ବଡ଼ ସ୍ଥାନମାନଙ୍କରେ ଇଂରେଜମାନଙ୍କର ପୃଷ୍ଠପୋଷକତାରେ କଲ କାରଖାନା ମାନ ଗଢି ଉଠିଲା । ଏହା ପୂର୍ବରୁ ଗଢି ଉଠିଥିବା ବଜାର ବ୍ୟବସ୍ଥାକୁ ଆହୁରି ବ୍ୟାପକ ଓ ସୁଦୃଢ଼ କଲା ।

## ବ୍ରିଟିଶ ଶାସନ ଓ ଶୋଷଣର କାଇଦା :

ବ୍ରିଟିଶ ଭଳି ଏକ ଛୋଟ ଦେଶ ଓ ସ୍ୱଳ୍ପଲୋକ ବିଶିଷ୍ଟ ଦେଶ ପକ୍ଷରେ ବିଶ୍ୱର ବହୁ ଦେଶକୁ ଏବଂ ବିଶେଷତଃ ଭାରତ ଭଳି ଏକ ବୃହତ୍ତର ଦେଶକୁ ଶାସନାଧୀନ ରଖି ଶୋଷଣ କରିବା ବହୁ କଷ୍ଟସାଧ୍ୟ । ନିଜର ସ୍ୱଳ୍ପ ଲୋକଶକ୍ତି ଯୋଗୁ ଏହାର ଉପନିବେଶିକ ଶାସନ ଓ ଶୋଷଣକୁ ସହଜ ସାଧ୍ୟ କରିବା ପାଇଁ ଏହା ସୂକ୍ଷ୍ମ ଉପାୟମାନ ସ୍ଥିର କରିଥିଲା । (୧) ନିଜର ବାଣିଜ୍ୟକୁ ଭାରତର ବିଭିନ୍ନ ପ୍ରାନ୍ତରରେ ବିସ୍ତୃତ କରିବାପାଇଁ ଏକ ସର୍ବଭାରତୀୟ-ଦଲାଲ-ବେପାରୀ ଶ୍ରେଣୀ ସୃଷ୍ଟି କରିଥିଲା ଯେଉଁମାନେ କି ଭାରତୀୟ । ଏହି ବେପାରୀମାନେ ଖାଲି ଇଂରେଜ-ଜାତ ପଣ୍ୟକୁ ଭାରତୀୟ ଲୋକଙ୍କ ଚଡ଼ାଧରରେ ବିକ୍ରୟ କରୁ ନ ଥିଲେ । ଅଧିକନ୍ତୁ ଭାରତର ବିଭିନ୍ନ ଅଞ୍ଚଳରୁ କଞ୍ଚାମାଲ, କୃଷିଜାତ ଦ୍ରବ୍ୟ ଓ ଜଙ୍ଗଲ ଜାତ ଦ୍ରବ୍ୟ ଖୁବ୍ ଶସ୍ତାରେ କିଣି ବିଲାତକୁ ଯୋଗାଉଥିଲେ । ଏହିମାନଙ୍କ ସାହାଯ୍ୟରେ ବ୍ରିଟିଶ ଶକ୍ତି ଭାରତୀୟ

ଲୋକଙ୍କୁ ଶୋଷଣ କରୁଥିଲେ । ଏହାର ବିନିମୟରେ ଏହି ଦଲାଲ-ବେପାରୀମାନେ ମଧ୍ୟ ନିଜର ପେଟ ବଢ଼ାଉଥିଲେ । (୨) ନିଜର ଶାସନକୁ ଟାଣ କରିବା ପାଇଁ ସେମାନେ ଏକ ସର୍ବଭାରତୀୟ-ଦଲାଲ-ଅମଲା ଶ୍ରେଣୀ ସୃଷ୍ଟି କରିଥିଲେ ଯେଉଁମାନେ କି ସେତେବେଳେ I.C.S. (ଆଇ: ସି: ଏସ୍:) Officer ଭାବେ ଖ୍ୟାତ । ଏହିମାନେ ଭାରତୀୟ ବୁଦ୍ଧିଜୀବୀ ଶ୍ରେଣୀର ଏକ ବିଶେଷ ଅଂଶ । (୩) ବ୍ରିଟିଶ-ବିରୋଧୀ ଗଣ ଆନ୍ଦୋଳନକୁ ଦମନ କରିବା ପାଇଁ ଭାରତୀୟ ଲୋକମାନଙ୍କୁ ନେଇ ସର୍ବ-ଭାରତୀୟ ସେନାବାହିନୀ, ନୌବାହିନୀ ଓ ପରେ ପରେ ଆକାଶ ବାହିନୀ ଆଦି ଗଢ଼ିଥିଲେ । ଠିକ୍ ସେହିପରି ସର୍ବଭାରତୀୟ ବିଚାର ବିଭାଗ ମଧ୍ୟ ଗଢ଼ି ଉଠିଥିଲା । (୪) ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଯେତେବେଳେ ଭାରତର ବିଭିନ୍ନ ବଡ଼ ବଡ଼ ସ୍ଥାନରେ ଶିଳ୍ପୋଦ୍ୟୋଗମାନ ଗଢ଼ି ଉଠିଲା ସେତେବେଳେ ବ୍ରିଟିଶ ଶକ୍ତି ସିଧାସଳଖ ଭାବେ ଭାରତୀୟ ବଡ଼ ବଡ଼ ଦଲାଲ-ବେପାରୀମାନଙ୍କ ଜରିଆରେ ଏହି ଶିଳ୍ପୋଦ୍ୟୋଗମାନ ମଧ୍ୟ ଆରମ୍ଭ କଲେ । ଏହି ଭାରତୀୟ ଶିଳ୍ପୋଦ୍ୟୋଗୀ ମାନଙ୍କର ନିଜର ଆବଶ୍ୟକୀୟ ପୁଂଜି ଏବଂ କାରିଗରୀ କୌଶଳ (technological know-how) ନ ଥିବା ସତ୍ତ୍ୱେ ସେମାନେ ବ୍ରିଟିଶ୍ ଶକ୍ତିର ପୃଷ୍ଠପୋଷକତାରେ ବଢ଼ିବାକୁ ଲାଗିଲେ ଏବଂ ପ୍ରକ୍ରିୟା କ୍ରମେ ଏମାନେ ଏକ ସର୍ବଭାରତୀୟ-ଦଲାଲ-ପୁଂଜିପତି ଶ୍ରେଣୀ ଭାବେ ଗଢ଼ି ଉଠିଲେ । ଉପରୋକ୍ତ ସର୍ବଭାରତୀୟ ଶ୍ରେଣୀ ଗୁଡ଼ିକୁ ଦଲାଲ ଆଖ୍ୟା ଦିଆଯାଏ । କାରଣ, ସେମାନେ ସଚେତନ ଭାବେ ନିଜର ସ୍ୱାର୍ଥ ଲାଗି ଭାରତର ଜନଗଣଙ୍କର ସ୍ୱାର୍ଥକୁ ବିଦେଶୀ ବ୍ରିଟିଶ ଶକ୍ତି ପାଖରେ ବଳି ଦେଉଥିଲେ । ବିଶେଷ କରି ସର୍ବଭାରତୀୟ-ଦଲାଲ-ପୁଂଜିପତି ଶ୍ରେଣୀ ଏହି ଦଲାଲୀରେ ସର୍ବୋଚ୍ଚ ନେତୃତ୍ୱ ନେଇ ଆସିଛି । ଏହି ଶ୍ରେଣୀ କେବେ ନିଜେ ସ୍ୱାଧୀନ ଓ ଆତ୍ମନିର୍ଭରଶୀଳ ପୁଂଜିପତି ଶ୍ରେଣୀ ଭାବେ ଗଢ଼ି ଉଠିବାକୁ ଚେଷ୍ଟାକରି ନାହିଁ ।

ବ୍ରିଟିଶ ଶକ୍ତି ଉପରୋକ୍ତ ସର୍ବଭାରତୀୟ-ଦଲାଲ-ଶ୍ରେଣୀ ସାହାଯ୍ୟରେ ଭାରତରେ ବିଭିନ୍ନ ଅଂଚଳରେ ବସବାସ କରୁଥିବା ବିଭିନ୍ନ ଭାଷାଭାଷି ଓ ସଂସ୍କୃତିର ଜନଗଣଙ୍କୁ ନିଜର ସ୍ୱାର୍ଥ ସକାଶେ ଜବରଦସ୍ତ ଏକ ଭାରତୀୟ ଶାସନ ଓ ଶୃଙ୍ଖଳାରେ ବାନ୍ଧି ରଖିଥିଲା ।

## ଭାରତରେ ଜାତୀୟ ଆନ୍ଦୋଳନ :

ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ ଭାରତର ବିଭିନ୍ନ ପ୍ରାନ୍ତରରେ (୧) ବିଭିନ୍ନ ପ୍ରକାର ଭାଷାର ବିକାଶ (୨) ବିଭିନ୍ନ ପ୍ରକାରର ସଂସ୍କୃତିର ବିକାଶ ଏବଂ (୩) ନିର୍ଦ୍ଦିଷ୍ଟ ଭାଷାଭାଷି ଓ ସଂସ୍କୃତିର ଜନଗଣଙ୍କୁ ନେଇ ବିଭିନ୍ନ ସାଧାରଣ ପ୍ରାନ୍ତର [common territory ]ର ବିକାଶ ବ୍ରିଟିଶ୍ ମାନଙ୍କ ପୂର୍ବରୁ ହୋଇ ସାରିଥିଲା ।

ବ୍ରିଟିଶମାନଙ୍କର ପୃଷ୍ଠପୋଷକତାରେ ଯେତେବେଳେ ଭାରତର ବିଭିନ୍ନ ପ୍ରାନ୍ତରରେ
ସଂକୀର୍ଣ୍ଣତାବାଦର ଉଦ୍ଭବ ତଥା ବିକାରମାନ ସୃଷ୍ଟି ହେଲା ସେତେବେଳେ ଭାରତର ବିଭିନ୍ନ
ପ୍ରାନ୍ତରରେ ବିଭିନ୍ନ ଆଧୁନିକ ଜାତୀୟ ରାଜ୍ୟ ଗଠନ ପାଇଁ ଏହା ସର୍ବଶେଷ ଉତ୍ପାଦନ
ଭାବେ କାମକଲା । ଫଳରେ ବିଭିନ୍ନ ପ୍ରାନ୍ତରରେ ଆଧୁନିକ ଜାତୀୟ ଚେତନାର
ଉଦ୍ରେକ ହେଲା । ତଥା ବିଭିନ୍ନ ପ୍ରାନ୍ତରରେ ଜାତୀୟ ଆନ୍ଦୋଳନ ମୁଣ୍ଡ ଟେକିଲା ।
ଆମ ଓଡ଼ିଶା ମଧ୍ୟ ଏଥିରୁ ବାଦଗଲା ନାହିଁ । ସ୍ୱତନ୍ତ୍ର ଓଡ଼ିଶା ଗଠନ ପାଇଁ ଆମ
ଓଡ଼ିଶାରେ ମଧ୍ୟ ଜାତୀୟ ଆନ୍ଦୋଳନ ତେଜି ଉଠିଲା ।

ଠିକ୍ ଏହି ସମୟରେ [ଅର୍ଥାତ ଦୁଇଟି ବିଶ୍ୱଯୁଦ୍ଧରେ ମଧ୍ୟବର୍ତ୍ତୀ କାଳରେ ]
ସାରା ପୃଥିବୀର ବିଭିନ୍ନ ଉପନିବେଶ ମାନଙ୍କରେ ସାମ୍ରାଜ୍ୟବାଦ ବିରୋଧୀ ସ୍ୱାଧୀନତା
ଆନ୍ଦୋଳନ ମଧ୍ୟ ତେଜି ଉଠିଲା । ଭାରତ ବି ଏଥିରୁ ବାଦଗଲାନାହିଁ । ତେବେ
ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ଚରିତ୍ରକୁ ବୁଝିବାକୁ ଗଲେ ଆମେ ଆଉ ଟିକିଏ
ଅତୀତକୁ ଫେରିଯିବା ।

୧୮୫୭ ମସିହାର ସିପାହୀ-ବିଦ୍ରୋହ ପରେ ପରେ ଯଦିଓ ଭାରତର ସ୍ୱାଧୀନତା
ସଂଗ୍ରାମ ଦବି ଯାଇଥିଲା ତଥାପି ଏହା ଯେ ପୁନଶ୍ଚ ମୁଣ୍ଡ ଟେକିବ ଏ ବିଷୟରେ ପରିପକ୍ୱ
ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନେ ପରିଷ୍କାର ଥିଲେ । ଭାରତର ଜନଗଣଙ୍କୁ ଶୋଷଣ,
ଶାସନ ଓ ଦମନ କରିବା ପାଇଁ ଉପରୋକ୍ତ ଯେଉଁ ସର୍ବଭାରତୀୟ ଦଲାଲ ଶ୍ରେଣୀ
ବ୍ରିଟିଶ ସାମ୍ରାଜ୍ୟବାଦ ଗଢ଼ିଥିଲା ତାହା ଯେ ନୂତନ ପରିସ୍ଥିତିରେ ଯଥେଷ୍ଟ ନୁହେଁ
ଏ ବିଷୟରେ ମଧ୍ୟ ପରିପକ୍ୱ ବ୍ରିଟିଶ-ସାମ୍ରାଜ୍ୟବାଦୀମାନେ ପରିଷ୍କାର ଥିଲେ । ତେଣୁ
ସେମାନେ ବୁଝୁଥିଲେ ଏକ କଳାଚମଡ଼ା-ଧଳା ରକ୍ତରେ ଗଢ଼ା ସର୍ବଭାରତୀୟ ଦଲାଲ-
ଜନ-ପ୍ରତିନିଧି-ରାଜନୈତିକ ପାର୍ଟି ଯେଉଁ ପାର୍ଟିକି ମୁହଁରେ ଜନଗଣଙ୍କର ସ୍ୱାର୍ଥର
କଥା ଉଦ୍‌ଗାରୁ ଥିବ । କିନ୍ତୁ ବାସ୍ତବରେ ସାମ୍ରାଜ୍ୟବାଦର ସ୍ୱାର୍ଥକୁ ହିଁ ରକ୍ଷା କରୁଥିବ ।
ତେଣୁ ବ୍ରିଟିଶ ଶକ୍ତି ଅତି ଗୋପନରେ ଭାରତୀୟ-ଜାତୀୟ କଂଗ୍ରେସ ଭଳି ରାଜନୈତିକ
ପାର୍ଟି ଗଢ଼ିଥିଲେ ।

ଉକ୍ତ କଂଗ୍ରେସ ପାର୍ଟି ହିଁ ଶେଷରେ ଭାରତର 'ସ୍ୱାଧୀନତା' ଆନ୍ଦୋଳନର
'ନେତୃତ୍ୱ' ନେଲା । ଯଦି ଭାରତର ଜନଗଣ ସଚ୍ଚା ସ୍ୱାଧୀନତା ପାଇଁ ସାମ୍ରାଜ୍ୟବାଦ
ବିରୁଦ୍ଧରେ ହୃଦୟର ସହିତ ସଂଗ୍ରାମ କରୁଥିଲେ । କିନ୍ତୁ ଏହି କଂଗ୍ରେସ ପାର୍ଟି
ଏକ ଛଳନାର ଭୂମିକା ଗ୍ରହଣ କରିଥିଲା । ମୁହଁରେ ବ୍ରିଟିଶ ବିରୁଦ୍ଧରେ ସ୍ୱାଧୀନତା
ସଂଗ୍ରାମ ଜାରିରେ ବ୍ରିଟେନ୍‌ର ସ୍ୱାର୍ଥରକ୍ଷା । ତା'ର ଶୋଷଣ ବ୍ୟବସ୍ଥା ଦୃଢ଼
ଭାବରେ ଧରିରଖିବା ଏହି ଜାତୀୟ କଂଗ୍ରେସ ବ୍ରିଟେନ ସାମ୍ରାଜ୍ୟବାଦର ସ୍ୱାର୍ଥରକ୍ଷା
କରିବା ସଙ୍ଗେ ସଙ୍ଗେ ଆଉ ଦୁଇଟି ଶ୍ରେଣୀର ସ୍ୱାର୍ଥ ରକ୍ଷା କରୁଥିଲା । ସେହି ଶ୍ରେଣୀ

ଦ୍ୱୟ ହେଲ : (୧) ସର୍ବଭାରତୀୟ-ଦଲାଲ-ପୁଂଜିପତି ଶ୍ରେଣୀ (All India comprador capitalist class) ଏବଂ (୨) ସର୍ବଭାରତୀୟ-ଦଲାଲ-ବେପାରୀ ଶ୍ରେଣୀ । ଜାତୀୟ କଂଗ୍ରେସ, ସ୍ୱନଷ୍ଟ, ବ୍ରିଟେନ୍ ସାମ୍ରାଜ୍ୟବାଦୀ ଶକ୍ତି ଆଗରେ ହାତ ଗୁହାରି କରି ଏହି ଶ୍ରେଣୀ ଦ୍ୱୟଙ୍କ ପାଇଁ କିଛିଟା ସୁବିଧା ହାସଲ କରୁଥିଲେ । ସରଳ ଭାରତୀୟ ଜନଗଣ ଏ ସମସ୍ତ ବୁଝିବାକୁ ଅସମର୍ଥ ଥିଲ ।

ଏକ ପକ୍ଷରେ ସାରାପୃଥିବୀର ଉପନିବେଶ ଓ ଅର୍ଦ୍ଧ-ଉପନିବେଶ ଦେଶମାନଙ୍କରେ ଜନଗଣଙ୍କର ସାମ୍ରାଜ୍ୟବାଦ ବିରୋଧୀ ତୀବ୍ର ଆନ୍ଦୋଳନ । ସୋଭିଏତ ସମାଜବାଦୀ ଦେଶର ପ୍ରଭାବରେ ବିଭିନ୍ନ ଦେଶରେ (ବିଶେଷତଃ ଭାରତ ଏବଂ ଚୀନ ଭଳି ବୃହତ୍ତମ ଦେଶମାନଙ୍କରେ ) ଜନଗଣ ପ୍ରଭାବିତ ଓ କମ୍ୟୁନିଷ୍ଟ ପାର୍ଟିର ଗଠନ । ଅନ୍ୟପକ୍ଷରେ ବିଶ୍ୱବଜାରର ପୁନର୍ବଣ୍ଟନ ପାଇଁ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ମଧ୍ୟରେ (ଅର୍ଥାତ୍, ବ୍ରିଟେନ, ଫ୍ରାନସ୍, ଜର୍ମାନ, ଜାପାନ ଓ ଆମେରିକା ଭଳି ସାମ୍ରାଜ୍ୟବାଦୀ ଦେଶ ମାନଙ୍କ ମଧ୍ୟରେ ) ତୀବ୍ର ପ୍ରତିଯୋଗିତା ଓ ଦ୍ୱିତୀୟ ବିଶ୍ୱଯୁଦ୍ଧ ପାଇଁ ଜୀବନ ମୂର୍ଚ୍ଛା ପ୍ରସ୍ତୁତ । ଏ ସମସ୍ତ ପରିସ୍ଥିତି ବ୍ରିଟିଶ୍ ସାମ୍ରାଜ୍ୟବାଦୀଙ୍କୁ ଭାରତରେ ଏକ ନୂଆ ଧରଣର ଶାସନକୁ ପ୍ରତିଷ୍ଠା କରିବା ପାଇଁ ବାଧ୍ୟ କରୁଥିଲ । ଉପନିବେଶ ଶୋଷଣର ଏକ ନୂଆ ପଦ୍ଧତି ବା ନବଉପନିବେଶିକ- ସାମାଜିକ ବ୍ୟବସ୍ଥା (Neo-colonial System)ର ପ୍ରସ୍ତୁତି ପଥରେ ବ୍ରିଟିଶ୍ ଆଗେଇ ଚାଲିଥିଲ । ସ୍ୱାଭାବିକ ଭାବେ ବ୍ରିଟିଶର ଏହି ନବ-ଉପନିବେଶିକ ସାମାଜିକ ବ୍ୟବସ୍ଥାକୁ ବୁଝିବାକୁ ଭାରତୀୟ ଜାତୀୟ କଂଗ୍ରେସ ଅକ୍ଷମ ନ ଥିଲ । ଭାରତୀୟ ଜାତୀୟ କଂଗ୍ରେସ ଭଲ ଭାବରେ ବୁଝିଥିଲା ଯେ ବ୍ରିଟିଶର ଭାରତରେ ସିଧାସଳଖ ଶାସନ ଆଉ ବେଶି ଦିନ ନୁହେଁ । ଏବଂ ଏହି ସମସ୍ତ ଶାସନର ଦାୟିତ୍ୱ ଭାରତୀୟ ଜାତୀୟ କଂଗ୍ରେସ ଉପରେ ଆସୁଛି ।

ବର୍ତ୍ତମାନ ସର୍ବଭାରତୀୟ-ଦଲାଲ-ପୁଂଜିପତି ଓ ବେପାରୀ ଶ୍ରେଣୀ ଓ ତାଙ୍କର ରାଜନୈତିକ ଦଳ ଭାରତୀୟ ଜାତୀୟ କଂଗ୍ରେସ ଆଗରେ ଦୁଇଟି ଆନ୍ଦୋଳନ । ଏକ ପକ୍ଷରେ ବ୍ରିଟିଶ ବିରୋଧୀ ଭାରତୀୟ ଜନଗଣଙ୍କର ସ୍ୱାଧୀନତା ଆନ୍ଦୋଳନ ଏବଂ ଅନ୍ୟ ପକ୍ଷରେ ଭାରତର ବିଭିନ୍ନ ପ୍ରାନ୍ତରରେ ବିଭିନ୍ନ ଜନଗଣଙ୍କର ସ୍ୱତନ୍ତ୍ରରାଜ୍ୟ ଗଠନ ପାଇଁ ଜାତୀୟ ଆନ୍ଦୋଳନ । ଏହି ଜାତୀୟ ଆନ୍ଦୋଳନର ଶେଷ ପରିଣତି ଯେ ( ସ୍ୱତନ୍ତ୍ର ଜାତୀୟ ଆନ୍ଦୋଳନ ଭଳି ) ଭାରତର ବିଭିନ୍ନ ଜାତିର ସ୍ୱତନ୍ତ୍ର ଭାବେ ସ୍ୱାଧୀନ ଜାତୀୟ ରାଜ୍ୟ ଗଠନ ଏକଥା ବୁଝିବାକୁ ସର୍ବଭାରତୀୟ-ଦଲାଲ-ପୁଂଜିପତି ଓ ବେପାରୀ ଶ୍ରେଣୀର ବାକି ରହିଲ ନାହିଁ । ଯଦି ଭାରତ ଭବିଷ୍ୟତରେ ଖଣ୍ଡ ବିଖଣ୍ଡ ହୋଇଯାଏ ତେବେ ଏହି ଉଭୟ ଶ୍ରେଣୀ ଯେ ଭାରତର ବିଭିନ୍ନ ପ୍ରାନ୍ତରରୁ ତା'ର ବଜାର ହରାଇବ ଏବଂ ଏହି ଶ୍ରେଣୀ ଦ୍ୱୟ ବିଶେଷ କ୍ଷତିଗ୍ରସ୍ତ ହେବ, ଏହା ମଧ୍ୟ ବୁଝିବାକୁ ତାଙ୍କର ବାକି ରହିଲ ନାହିଁ ।

ଏହି ପରିସ୍ଥିତିରେ ଏହି ଶ୍ରେଣୀ ସ୍ୱାର୍ଥ ଓ ଏମାନଙ୍କ ଦ୍ୱାରା ଚାଳିତ ଭାରତୀୟ ଜାତୀୟ କଂଗ୍ରେସ "ହିନ୍ଦୁରାଜ", "ହିନ୍ଦୁସ୍ଥାନ", "ଅଖଣ୍ଡଭାରତ"ର ମାନସିକତା ଭାରତୀୟ ଜନଗଣଙ୍କ ମଧ୍ୟରେ ଖେଳାଇବାକୁ ଆରମ୍ଭ କଲା । ଏହି ଭାରତୀୟ ଜାତୀୟ କଂଗ୍ରେସର ହିନ୍ଦୁ-ଐକ୍ୟବାଦକୁ ଉପକରି ସଂଖ୍ୟାଲଘୁ ମୁସଲମାନ ସଂପ୍ରଦାୟ ଉତ୍ସାହିତ ହେଲା ଓ ବ୍ରିଟିଶ୍ ସାମ୍ରାଜ୍ୟବାଦର ଆଉ ଏକ ଦଲାଲ ପାର୍ଟି ମୁସଲିମ୍ ଲିଗ 'ପାକିସ୍ଥାନ'ର ରାସ୍ତା ଖୋଲିବାକୁ ସୁବିଧା ପାଇଲା ।

କିନ୍ତୁ ଏ "ଅଖଣ୍ଡଭାରତ"ର ପ୍ରଚାରସତ୍ତ୍ୱେ ଭାରତରେ ବିଭିନ୍ନ ପ୍ରାନ୍ତରେ ଜାତୀୟ ଆନ୍ଦୋଳନ ତଥା ସ୍ୱତନ୍ତ୍ର ଜାତୀୟ ରାଜ୍ୟ ଗଠନର ଡାକରା ବନ୍ଦ ହେଲା ନାହିଁ । ତେଣୁ ସେତେବେଳେ ଭାରତୀୟ କଂଗ୍ରେସ ବାଧ୍ୟ ହୋଇ ଛଳନାତ୍ମକ ଭାବେ ଭାରତରେ ବିଭିନ୍ନ ଜାତିର ଜନଗଣଙ୍କୁ ପ୍ରତିଶ୍ରୁତି ଦେଇଥିଲା ଯେ ଭାରତ ସ୍ୱାଧୀନତା ହାସଲ କଲାପରେ ବିଭିନ୍ନ ଜାତିର ଲୋକମାନେ ସ୍ୱେଚ୍ଛା ପୂର୍ବକ ଭାବେ ଭାରତୀୟ-ୟୁନିୟନରେ ରହି ପାରିବେ କିମ୍ବା ଭାରତୀୟ ୟୁନିୟନରୁ ଅଲଗା ହୋଇ ସ୍ୱତନ୍ତ୍ର ରାଜ୍ୟ ଗଠନକରି ରହି ପାରିବେ ।

## ବିଶ୍ୱ ଓ ଭାରତରେ ନବ-ଉପନିବେଶବାଦ (Neo-colonialism)ର ପ୍ରତିଷ୍ଠା :

ବିଂଶ ଶତାବ୍ଦୀର ଚତୁର୍ଥ ଦଶକର ଶେଷ ଭାଗରେ ଦ୍ୱିତୀୟ-ବିଶ୍ୱଯୁଦ୍ଧ ଆରମ୍ଭ ଏବଂ ଯୁଦ୍ଧପରେ ପରେ ଉପନିବେଶିକ ଓ ଅର୍ଦ୍ଧ-ଉପନିବେଶିକ ଦେଶମାନଙ୍କରେ ସାମ୍ରାଜ୍ୟବାଦ ବିରୋଧୀ ସ୍ୱାଧୀନତା ଆନ୍ଦୋଳନ ଅତ୍ୟନ୍ତ କ୍ଷିପ୍ର ଗତିରେ ତେଜି ଉଠିଲା । ଏସିଆ ମହାଦେଶରେ ଚୀନ-କମ୍ୟୁନିଷ୍ଟ ପାର୍ଟିର ତଥା ଜନଗଣଙ୍କର ଅପୂର୍ବ ବିଜୟ ଓ ୟୁରୋପରେ ନାନାଦି ସମାଜବାଦୀ ଦେଶର ଗଠନ ଦେଖାଦେଲା । ଜର୍ମାନ ଓ ଜାପାନ ଭଳି ଫାସିଷ୍ଟ-ଶକ୍ତି ଖାଲି ପରାଜିତକୁ ଗଲା ନାହିଁ । ବ୍ରିଟିଶ୍ ଓ ଫ୍ରାନସ୍ ଭଳି ସାମ୍ରାଜ୍ୟବାଦୀ ଶକ୍ତି ମଧ୍ୟ ବହୁତ ଦୁର୍ବଳ ହୋଇ ପଡ଼ିଲା । ଏହା ସହିତ ସମାଜବାଦୀ ରାଷ୍ଟ୍ରଗୋଷ୍ଠୀ (Socialist-camp)ର ଉଦ୍ଭବ ଓ ସୋଭିଏତ ଦେଶର ବିଶ୍ୱବ୍ୟାପୀ ପ୍ରଭାବ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କୁ ଚକିତ କରାଇଲା । ସାମ୍ରାଜ୍ୟବାଦୀ ଶକ୍ତିମାନେ ଉପନିବେଶିକ ଶୋଷଣକୁ ଆଉ ପୁରୁଣା ପଦ୍ଧତିରେ ଅର୍ଥାତ ସିଧାସଳଖ ଭାବେ ଚାଲୁ ରଖିପାରିବେ ନାହିଁ ବୋଲି ଉପଲବ୍ଧି କଲେ । ଏହି ଉପନିବେଶିକ ଶୋଷଣକୁ ଏକ ନୂଆ କାଇଦାରେ ଚାଲୁ ରଖିବେ ବୋଲି ଏକ ନୂତନ ରଣନୀତି (New-Strategy)ର ସିଦ୍ଧାନ୍ତ ନେଲେ । ତାହା ହେଲା ସେମାନଙ୍କର ଉପନିବେଶମାନଙ୍କରେ ଏକ ଦଲାଲ ଶ୍ରେଣୀ ସୃଷ୍ଟି କରିବା ଓ ସେହି ଦଲାଲ ଶ୍ରେଣୀ ହାତରେ ତଥାକଥିତ-ସ୍ୱାଧିନତା ଅର୍ପଣ କରିବା । ଯେଉଁ ଶ୍ରେଣୀ କି ସାମ୍ରାଜ୍ୟବାଦର ଉପନିବେଶିକ ଶୋଷଣକୁ ଖାଲି ଅକ୍ଷୁର୍ଣ୍ଣ ରଖିବ ନାହିଁ ବରଂ

ଭବିଷ୍ୟତରେ ଏହାକୁ ଆହୁରି ଦୃଢ଼ୀଭୂତ କରିବ । ସାମ୍ରାଜ୍ୟବାଦୀ ଶକ୍ତିର ଏହି ବିଶ୍ୱବ୍ୟାପୀ ରଣକୌଶଳ ବା ପଦ୍ଧତିକୁ ନବ-ସାମ୍ରାଜ୍ୟବାଦ (New-Imperialism) ବା ନବ-ଉପନିବେଶବାଦ (Neo-colonialism) କୁହାଯାଏ ।

ଭାରତ ବର୍ଷରେ ମଧ୍ୟ ତାହାହିଁ ଘଟିଲା । ବ୍ରିଟିଶ-ସାମ୍ରାଜ୍ୟବାଦୀ ଦ୍ୱାରା ଗଢ଼ାଯାଇଥିବା ସର୍ବ-ଭାରତୀୟ-ଦଲାଲ-ଶ୍ରେଣୀ, ପୁଂଜିପତି-ଶ୍ରେଣୀ ସର୍ବଭାରତୀୟ-ଦଲାଲ-ବେପାରୀ ଶ୍ରେଣୀ, ସର୍ବଭାରତୀୟ-ଦଲାଲ-ଅମଲାତନ୍ତ୍ର ଓ ଏମାନଙ୍କୁ ପ୍ରତିନିଧିତ୍ୱ କରୁଥିବା ଦଲାଲ-ସର୍ବଭାରତୀୟ-ଜାତୀୟ-କଂଗ୍ରେସ ହାତରେ ଦେଶର କ୍ଷମତା ଅର୍ପଣ କରି ବ୍ରିଟିଶ ଶକ୍ତି ତା'ର ନିଜ ଦେଶକୁ ଚାଲିଗଲା । ତା'ହାତରେ ଗଠିତ ଭାରତୀୟ ସମ୍ବିଧାନ, ଭାରତୀୟ ସେନାବାହିନୀ, ନୌବାହିନୀ ଓ ଆକାଶବାହିନୀ ଏବଂ ବିଚାର ବିଭାଗ ମଧ୍ୟ ଅକ୍ଷୁଣ୍ଣ ଅବସ୍ଥାରେ ପଡ଼ି ରହିଲା । ପୁନଶ୍ଚ, ତା'ର ପୁଂଜି ଓ ଶିଳ୍ପୋଦ୍ୟୋଗ ଯାହାଦ୍ୱାରା କି ବ୍ରିଟିଶ ଶକ୍ତି ଭାରତୀୟ ଜନଗଣଙ୍କୁ ଶୋଷଣ କରୁଥିଲା ସେ ସମସ୍ତ ଅକ୍ଷୁଣ୍ଣ ରହିଲା । ଅର୍ଥାତ୍ ବ୍ରିଟିଶର ଗୋରାଲୋକମାନେ ଏଠାରୁ ଚାଲିଗଲେ କିନ୍ତୁ ଏହାର ଶୋଷଣ-ଯନ୍ତ୍ର ଓ ପ୍ରତିଷ୍ଠା ଲାଗି ରହିଲା । ଏହି ଶୋଷଣ-ଯନ୍ତ୍ର ଓ ପ୍ରତିଷ୍ଠାର ମାଫେତ୍‌ଦାର (Trustee) ରହିଲେ କଳାଚମଡ଼ାଯୁକ୍ତ ବ୍ରିଟିଶର ଦଲାଲ (୧) ସର୍ବଭାରତୀୟ-ଦଲାଲ-ପୁଂଜିପତି ଶ୍ରେଣୀ, (୨) ସର୍ବଭାରତୀୟ-ଦଲାଲ ବେପାରୀ ଶ୍ରେଣୀ (୩) ସର୍ବଭାରତୀୟ ଦଲାଲ ଅମଲା ଶ୍ରେଣୀ, (୪) ସର୍ବଭାରତୀୟ ସେନାବାହିନୀ, ନୌବାହିନୀ ଓ ଆକାଶ ବାହିନୀର ଉଚ୍ଚ କର୍ମକର୍ତ୍ତାମାନେ (୫) ସର୍ବଭାରତୀୟ ବିଚାର ବିଭାଗର ମୁଖ୍ୟ-ବିଚାରକମାନେ, (୬) ଏବଂ ଏ ସମସ୍ତଙ୍କୁ ପ୍ରତିନିଧିତ୍ୱ କରୁଥିବା ସର୍ବ ଭାରତୀୟ ଜାତୀୟ କଂଗ୍ରେସ । ଉପରୋକ୍ତ ଦଲାଲ ଶ୍ରେଣୀମାନଙ୍କୁ ଏବେଠାରୁ ସଂକ୍ଷେପରେ କୁହାଯିବ ସାମ୍ରାଜ୍ୟବାଦର ଦଲାଲ ସର୍ବ ଭାରତୀୟ ଶାସକ ଶ୍ରେଣୀ । ଏମାନେ ଯଦିଓ କଳାଚମ ଯୁକ୍ତ ଏମାନଙ୍କ ଦେହରେ କିନ୍ତୁ ଗୋରା ରକ୍ତ ପ୍ରବାହିତ । କାରଣ ଗୋରା ମାନଙ୍କୁ ଏମାନେ ଏତେ ପ୍ରଚୁର ଭଲ ପାଆନ୍ତି ଯେ ନିଜର ପେଟ ବଢ଼ାଇବା ସକାଶେ ଏମାନେ ଭାରତର ଜନଗଣଙ୍କର ସମସ୍ତ ସ୍ୱାର୍ଥ ଏବଂ ଏ ଦେଶର ସମସ୍ତ ଇଜ୍ଜତକୁ ଏହି ବିଦେଶୀ ମାନଙ୍କ ପାଖରେ ବନ୍ଧା ପକାନ୍ତି ଓ ଏବେ ପକାଉଛନ୍ତି ମଧ୍ୟ ।

ବାସ୍ତବରେ ଆମ ଭାରତୀୟ ଜନଗଣ ଭାବିଲେ ଯେ ଆମ ଦେଶରୁ ଗୋରା ମାନେ ଚାଲିଗଲେ ଓ ଆମେ ସ୍ୱାଧୀନ ହେଲୁ । କିନ୍ତୁ ଏହା ସତ୍ୟନୁହେଁ । ବ୍ରିଟିଶ ମାନେ ଆମ ଭାରତୀୟ ଜନଗଣଙ୍କ ଆଗରେ ସ୍ୱାଧୀନତାର ଏକ ଧୂମ୍ର ପରଦା ଟାଙ୍ଗି ଦେଲେ । ଏହି ଧୂମ୍ର ପରଦା ଅନ୍ୟ କିଛି ନୁହେଁ । ଏହା ହେଉଛି ଏହି କଳାଚମ ଯୁକ୍ତ ସାମ୍ରାଜ୍ୟବାଦୀର ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀ । ଏହି ଧୂମ୍ର ପରଦାର ଉହାଡ଼ରେ ରହି ସାମ୍ରାଜ୍ୟବାଦର ଶକ୍ତି ମାନେ ଆମ ଦେଶକୁ ଆଗରୁ ଯେଉଁ

ଭଳି ଶାସନ ଓ ଶୋଷଣ କରୁଥିଲେ ତାହାଠାରୁ ଅଧିକ ଭୟଙ୍କର ଭାବେ ଶାସନ ଓ ଶୋଷଣ କରୁଛନ୍ତି । ଆମ ଭାରତ ଏକ ଉପନିବେଶ (colony) ବଦଳରେ ଏକ ନବ ଉପନିବେଶ (Neo-colony ) ଭାବରେ ବର୍ତ୍ତମାନ ଛିଡ଼ା ହୋଇଛି ।

## ଭାରତରେ ଜାତୀୟ ଆନ୍ଦୋଳନ ପ୍ରତି ବିଶ୍ୱାସ ଘାତକତା :

କଥାକଥିତ ସ୍ୱାଧୀନତା ପୂର୍ବରୁ ସାମ୍ରାଜ୍ୟବାଦର ଦଲାଲ ସର୍ବ ଭାରତୀୟ ଶାସକ ଶ୍ରେଣୀ ଭାରତର ବିଭିନ୍ନ ଜାତିର ଜନଗଣଙ୍କୁ ସ୍ୱତନ୍ତ୍ର ଭାବେ ସ୍ୱାଧୀନ ଜାତୀୟ ରାଜ୍ୟ ଗଠନ କରିବାର ଅଧିକାର ପାଇଁ ଯେଉଁ ପ୍ରତିଶ୍ରୁତି ଦେଇଥିଲା କଥାକଥିତ ସ୍ୱାଧୀନତା ପରେ ସେ ତାହା ଭୁଲିଗଲା, ଖାଲି ସେତିକି ନୁହେଁ । 'ସ୍ୱାଧୀନତା' ପରବର୍ତ୍ତି ଅବସ୍ଥାରେ ଯେଉଁ ଜାତିମାନେ ଭାରତର-ସୂଙ୍ଗସୂତ୍ର ଭିତରୁ ବାହାରି ଯାଇ ସ୍ୱାଧୀନ ଜାତୀୟ ରାଜ୍ୟ ଗଠନ କରିବା ପାଇଁ ଉଦ୍ୟମ କଲେ ସେମାନଙ୍କ ବିଚ୍ଛିନ୍ନତାବାଦୀ, ଆତଙ୍କବାଦୀ, ତଥା, ସାମ୍ରାଜ୍ୟବାଦ ହାତରେ ଶିକାର ବୋଲି ଆଖ୍ୟାଦେଇ ସେମାନଙ୍କ ଉପରେ ଅବର୍ଣନୀୟ ଅତ୍ୟାଚାର ଆରମ୍ଭ କରିଦେଲେ । ଏପରିକି ଭାଷା-ଅନୁଯାୟୀ ଭାରତୀୟ-ସୂଙ୍ଗସୂତ୍ର ଭିତରେ ଥାଇ ଅଲଗା ପ୍ରଦେଶ ଗଠନ ପାଇଁ ଅନେକ ଜାତିକୁ ସ୍ୱାଧୀନତା ପରେ ମଧ୍ୟ ଲଢିବାକୁ ପଡ଼ିଲା ।

ଭାରତ ଏକ ଜାତିର ତତ୍ତ୍ୱ (Theory of India as one nation) ର ପ୍ରକଷ୍ଟ ପ୍ରଚାର ହେଲା । ଭାରତ ଯେ ଏକ ବହୁ-ଜାତୀୟ ରାଜ୍ୟ (Multi-national state) ଏକଥା ଜନଗଣ ଭୁଲିଯିବା ପାଇଁ ସବୁ ପ୍ରକାର ଉଦ୍ୟମ ଚାଲିଲା । ଏହାର ଜ୍ୱଳନ୍ତ ଉଦାହରଣ ହେଉଛି ଯେ ହିନ୍ଦିକୁ ଏକ ରାଷ୍ଟ୍ରୀୟ ଭାଷାରୂପେ ବିଭିନ୍ନ ଜାତି ଉପରେ ଲଦାଯିବା ପାଇଁ ପ୍ରଚେଷ୍ଟା ଚାଲିଲା । ଆଉ ଏବେ ଚାଲିଛି ମଧ୍ୟ । ହିନ୍ଦୁ-ଔଦ୍ଧତ୍ୟବାଦ (Hindu-chauvmism)କୁ ଭିତ୍ତିକରି 'ଅଖଣ୍ଡ ଭାରତ'ର ପ୍ରଚାର ଚାଲିଲା ଏବଂ ଏବେ ଚାଲିଛି ମଧ୍ୟ । ତେବେ, ଭାରତର ବିଭିନ୍ନ ଜାତି ସ୍ୱାଧୀନ ଜାତୀୟ ରାଜ୍ୟ ଭାବରେ ବିକଶିତ ହେବାପାଇଁ ଏମାନେ ଏତେ ଭୀତ ତ୍ରସ୍ତ କାହିଁକି ?

ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ ସାମ୍ରାଜ୍ୟବାଦର ପୃଷ୍ଠପୋଷକତାରେ ଗଢି ଉଠିଥିବା ସର୍ବଭାରତୀୟ ଦଲାଲ ଏକ ଚାଟିଆ ବେପାରୀ ଶ୍ରେଣୀ ଭାରତର ସମସ୍ତ ପ୍ରାନ୍ତରେ ବଜାରକୁ ଏକ ଚାଟିଆ ଭାବେ ନିୟନ୍ତ୍ରଣ କରନ୍ତି । ଏହି ବଜାରରେ ସେମାନଙ୍କର କଣା ବଜାରୁ ପ୍ରଚୁର ମୁନାଫା ଉଠେ । ସେଇ ମୁନାଫାରୁ ସାମ୍ରାଜ୍ୟବାଦୀ ମାନେ ବେଶ କିଛି ଭାଗ ପାଇବା ସଙ୍ଗେ ସଙ୍ଗେ ଏହି ସର୍ବ ଭାରତୀୟ-ଦଲାଲ-ବେପାରୀମାନେ ବି ଏକ ବଡ଼ଝ ଭାଗ ପାଆନ୍ତି । ଯଦି ଭାରତ ବିଭିନ୍ନ ସ୍ୱାଧୀନ

ଜାତୀୟ ରାଜ୍ୟ ମାନଙ୍କରେ ବିଭକ୍ତ ହୋଇଯାଏ ତେବେ ସାମ୍ରାଜ୍ୟବାଦୀ ମାନେ ଏବଂ ସେମାନଙ୍କର ଦଲାଲ ସର୍ବ ଭାରତୀୟ ବେପାରୀ ମାନେ ସେମାନଙ୍କର ବଜାରକୁ ହରାଇ ବସିବା ସଙ୍ଗେ ସଙ୍ଗେ ସେମାନଙ୍କର ମୁନାଫାକୁ ମଧ୍ୟ ହରାଇ ବସିବେ । ଠିକ୍ ସେହିପରି ସାମ୍ରାଜ୍ୟବାଦର ପୃଷ୍ଠପୋଷକତାରେ ଗଢି ଉଠିଥିବା ସର୍ବଭାରତୀୟ ଦଲାଲ ଏକଚାଟିଆ ପୁଂଜିପତି ଶ୍ରେଣୀ ବିଭିନ୍ନ ରାଜ୍ୟରୁ ଯେଉଁ ଶସ୍ତା କଞ୍ଚାମାଲ ପାଉଛି ତାହାକୁ ଏବଂ ବିଭିନ୍ନ ରାଜ୍ୟରେ ତା'ର ଯେଉଁ ଶିଳ୍ପଜାତ ଦ୍ରବ୍ୟର ବଜାର ଅଛି ତାହାକୁ ମଧ୍ୟ ହରାଇ ବସିବ । ଅର୍ଥାତ ସେ ମଧ୍ୟ ପ୍ରଚୁର ମୁନାଫାରୁ ବଂଚିତ ହେବ । ତେଣୁ ସର୍ବଭାରତୀୟ ଦଲାଲ-ଏକଚାଟିଆ-ପୁଂଜିପତି ଶ୍ରେଣୀ ଓ ସର୍ବଭାରତୀୟ-ଦଲାଲ ଏକଚାଟିଆ-ବେପାରୀ ଶ୍ରେଣୀ ନିଜର ସ୍ୱାର୍ଥ ତଥା ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ସ୍ୱାର୍ଥ ରକ୍ଷା ସକାଶେ ଭାରତକୁ ବିଭକ୍ତ କରିବାକୁ ଚାହାଁନ୍ତି ନାହିଁ । ତେଣୁ ସାମ୍ରାଜ୍ୟବାଦୀ ଶକ୍ତିମାନେ ଓ ଏମାନଙ୍କର ଦଲାଲ ସର୍ବଭାରତୀୟ-ଶାସକ ଶ୍ରେଣୀ ଭାରତ ଏକ ଜାତି ବୋଲି ପ୍ରଚାର କରନ୍ତି ଓ ଭାରତର ବିଭକ୍ତିକରଣ ଘୋର ବିରୋଧୀ ।

## ଭାରତର ଜାତୀୟ ଆନ୍ଦୋଳନରେ ନେତୃତ୍ୱ :

ଭାରତରେ ଜାତୀୟ ଆନ୍ଦୋଳନ କାହିଁକି ବାଧାପ୍ରାପ୍ତ ହେଉଛି ଓ ଏହା ଜାତୀୟ ମୁକ୍ତି ଆନ୍ଦୋଳନକୁ କାହିଁକି ଅଗ୍ରସର ହୋଇପାରୁ ନାହିଁ ଏହାର ଅଜ କେତୋଟି ପ୍ରଧାନ କାରଣ ଅଛି । ଜାତୀୟ ମୁକ୍ତି ଆନ୍ଦୋଳନର ନେତୃତ୍ୱକାରୀ ଶ୍ରେଣୀ ହେଉଛି ଜାତୀୟ-ପୁଂଜିପତି ଶ୍ରେଣୀ (National Bourgeoisie) କିମ୍ବା ସର୍ବହରା ଶ୍ରେଣୀ । ଆଗରୁ ଉଲ୍ଲେଖ କରାଯାଇଛି ଯେ ଭାରତରେ ପୁଂଜିବାଦର ଉଦ୍ଭବ ହୁଏ ସାମ୍ରାଜ୍ୟବାଦର ପୃଷ୍ଠପୋଷକତାରେ । ପୁନଶ୍ଚ, ଏହି ପୁଂଜିବାଦ ନିୟନ୍ତ୍ରିତ ହୁଏ (ଏବଂ ଏବେ ବି ହେଉଛି) ସାମ୍ରାଜ୍ୟବାଦୀ ଶକ୍ତିଦ୍ୱାରା । ତେଣୁ ଭାରତରେ ତଥା ଏହାର ବିଭିନ୍ନ ଜାତୀୟ ପ୍ରାନ୍ତରରେ ପୁଂଜିବାଦର ଅର୍ଥ ବ୍ୟବସ୍ଥା ହେଉଛି ଏକ ଦଲାଲୀ ପୁଂଜିବାଦୀ-ଅର୍ଥବ୍ୟବସ୍ଥା (Comprador-capitalist economy) । ଏହି ଅର୍ଥବ୍ୟବସ୍ଥା ଯୋଗୁ ଭାରତରେ କିମ୍ବା ଏହାର ବିଭିନ୍ନ ପ୍ରାନ୍ତୀୟ ଜାତୀୟ ରାଜ୍ୟରେ ଜାତୀୟ-ପୁଂଜିପତି ଶ୍ରେଣୀର ଉଦ୍ରେକ ଏ ପର୍ଯ୍ୟନ୍ତ ବି ହୋଇ ନାହିଁ । ଯେଉଁ ପୁଂଜିପତି ଶ୍ରେଣୀ ସୃଷ୍ଟି ହୋଇଛି ତାହା ହେଉଛି ଏକ ଦଲାଲ ପୁଂଜିପତି ଶ୍ରେଣୀ ଯେଉଁ ଶ୍ରେଣୀ କି ସବୁବେଳେ ସାମ୍ରାଜ୍ୟବାଦୀ ଅର୍ଥ ବ୍ୟବସ୍ଥାରେ ଖାଲି ଛନ୍ଦା ନୁହେଁ, ଅଧିକନ୍ତୁ, ଏହା ସର୍ବଦା ସେମାନଙ୍କଠାରେ ନିର୍ଭରଶୀଳ ଓ ସେମାନଙ୍କ ଦ୍ୱାରା ନିୟନ୍ତ୍ରିତ । ତେଣୁ, ସାମ୍ରାଜ୍ୟବାଦ ଠାରୁ ଛିନ୍ନ ହୋଇ ବଂଚିବା ସେମାନଙ୍କ ଠାରେ ଅସମ୍ଭବ । ସେଥିପାଇଁ ସେମାନେ ଦଲାଲର ଭୂମିକା ନେଇଥାନ୍ତି । ଅର୍ଥାତ ନିଜେ ବଂଚିବା ପାଇଁ ଦେଶ ଓ ଜାତିର ସ୍ୱାର୍ଥକୁ ସାମ୍ରାଜ୍ୟବାଦୀ ଶକ୍ତି ଆଗରେ ବଳି ଦିଅନ୍ତି ।

ପୂନଶ୍ଚ, ଭାରତରେ ଯେଉଁ ଦଲାଲ ପୁଂଜିପତି ଶ୍ରେଣୀ ସୃଷ୍ଟି ହୋଇଛି ତାହା ତିନିଭାଗରେ ବିଭକ୍ତ । ଯଥା—

## ୧ । ସର୍ବଭାରତୀୟ-ଦଲାଲ-ଏକଚାଟିଆ-ପୁଂଜିପତି ଶ୍ରେଣୀ :

ଯେଉଁମାନଙ୍କର କଳ କାରଖାନା ଓ ବଜାର ଭାରତର ସାରା ପ୍ରାନ୍ତରେ ଅଛି । ତେଣୁ ଏମାନେ ସାରାଭାରତରେ କଞ୍ଚାମାଲ ଓ ବଜାର ଉପରେ ଏକଚାଟିଆ (Monopoly) ଶାସନ ଚଳାନ୍ତି । ଯଦିଓ ଏହି ଏକଚାଟିଆ ଶ୍ରେଣୀ ମଧ୍ୟରେ କେବଳ କେତେକ ଜାତିର ଶୋଷକ ଶ୍ରେଣୀ ଅଛନ୍ତି । ଏମାନେ ବିଶେଷ କରି ମାଡ୍ବାରୀ ସଂପ୍ରଦାୟର । ଏମାନେ ସାମ୍ରାଜ୍ୟବାଦ ଶକ୍ତି ସହିତ ସିଧାସଳଖ ସଂପର୍କ ରଖିଥାନ୍ତି । ତେଣୁ ସାମ୍ରାଜ୍ୟବାଦୀ ଶକ୍ତିର ଏମାନେ ଅତି ବିଶ୍ୱସ୍ତ ଦଲାଲ ।

## ୨ । ଆଂଚଳିକ-ଦଲାଲ-ପୁଂଜିପତି ଶ୍ରେଣୀ :

ଏହି ଦଲାଲ ପୁଂଜିପତି ଶ୍ରେଣୀର କେତେକ ବ୍ୟକ୍ତି ବିଶେଷ ଯଦିଓ ସିଧାସଳଖ ଭାବେ ସାମ୍ରାଜ୍ୟବାଦୀ ଶକ୍ତି ସହିତ ସଂପର୍କ ରଖନ୍ତି କିନ୍ତୁ ଅଧିକାଂଶ ସର୍ବଭାରତୀୟ-ଏକଚାଟିଆ-ଦଲାଲ-ପୁଂଜିପତି ଶ୍ରେଣୀର ଦୟା ଓ ଅନୁଗତ୍ୟରେ ବଢ଼ିଥାନ୍ତି । ଯଦିଓ ଏମାନଙ୍କର ବଜାର ଓ କଂଚାମାଲ ଆଂଚଳିକ ସ୍ତରରେ ସୀମିତ । ତଥାପି, ବଜାର, କଞ୍ଚାମାଲ ଓ ସମାଜରୁ ଉଠାଯାଉଥିବା ମୁନାଫାକୁ ଭାଗବାଣ୍ଟ କରିବା ପାଇଁ ସର୍ବଭାରତୀୟ-ଏକଚାଟିଆ-ଦଲାଲ- ପୁଂଜିପତି ଶ୍ରେଣୀ ଓ ଆଞ୍ଚଳିକ-ଦଲାଲ-ପୁଂଜିପତି ଶ୍ରେଣୀ ମଧ୍ୟରେ ସଂଘର୍ଷ ହୁଏ । ଏହି ଦୁଇଟି ଦଲାଲ ଶ୍ରେଣୀ (ସର୍ବଭାରତୀୟ-ଏକଚାଟିଆ ଏବଂ ଆଞ୍ଚଳିକ) ସାମ୍ରାଜ୍ୟବାଦୀ ଶକ୍ତିକୁ ପଠା ଯାଉଥିବା ମୁନାଫା ବିରୁଦ୍ଧରେ ତ ସଂଗ୍ରାମ କରିପାରନ୍ତି ନାହିଁ । ଖାଲି ଦେଶରେ ରହୁଥିବା ମୁନାଫାକୁ କିଏ କେତେ ପରିମାଣରେ ବାଣ୍ଟିନେବ ଏଇଥିପାଇଁ ପରସ୍ପର ମଧ୍ୟରେ ସଂଗ୍ରାମ କରନ୍ତି ।

## ୩ । ଦଲାଲ-ପୁଂଜିପତି କୃଷକ ଶ୍ରେଣୀ :

ସାମ୍ରାଜ୍ୟବାଦୀ ଶକ୍ତି ନିଜର ମୁନାଫା ପାଇଁ ଉପନିବେଶ, ନବ ଉପନିବେଶ ମାନଙ୍କରେ ଖାଲି ଶିଳ୍ପ କ୍ଷେତ୍ରରେ ପୁଂଜି ଲଗାଣ କରି ନାହାନ୍ତି । ଅଧିକନ୍ତୁ ମଧ୍ୟ କୃଷି କ୍ଷେତ୍ରରେ ସେମାନେ କ୍ରମଶଃ ପୁଂଜି ଲଗାଣ ବଢ଼ାଇ ଚାଲିଛନ୍ତି । ତେଣୁ ଏହି ଉପନିବେଶ ଓ ନବ-ଉପନିବେଶ ଦେଶମାନଙ୍କରେ କୃଷି କ୍ଷେତ୍ରରେ ପୁଂଜିବାଦର ବିକାଶ ସଂପୂର୍ଣ୍ଣ ସାମ୍ରାଜ୍ୟବାଦର ପୁଂଜି ଓ କାରିଗରୀ କୌଶଳ ଉପରେ ନିର୍ଭରଶୀଳ ଓ ଏହା ଦ୍ୱାରା ନିୟନ୍ତ୍ରିତ । ଫଳରେ ସାମ୍ରାଜ୍ୟବାଦ ଶକ୍ତିର ପୃଷ୍ଠପୋଷକତା

ଓ ନିୟନ୍ତ୍ରଣରେ ଏକ ଦଲାଲ-ପୁଂଜିବାଦୀ-ଜମିଦାର (Comprador-capitalist-landlord ) ଓ ଦଲାଲ-ପୁଂଜିବାଦୀ-କୃଷକ (Comprador-capitalist-farmer )ର ଶ୍ରେଣୀ ଭାରତ ବର୍ଷର ଗ୍ରାମାଂଚଳରେ ଜନ୍ମ ନେଇଛି । ଆତ୍ମ-ନିର୍ଭରଶୀଳ ହୋଇ ସ୍ୱାଧୀନ-ପୁଂଜିବାଦୀ-କୃଷକ ଭାବେ ବଢ଼ିବା ପାଇଁ ଯେହେତୁ ଏମାନେ ଅକ୍ଷମ ତେଣୁ ଏମାନେ ନିଜର ବଂଚିବା ପାଇଁ ସାମ୍ରାଜ୍ୟବାଦୀ ଶକ୍ତି ନିକଟରେ ଆମ ଦେଶ ଓ ଜାତିର ସ୍ୱାର୍ଥକୁ ବିକ୍ରି କରନ୍ତି ଓ ଦେଉଛନ୍ତି ମଧ୍ୟ । ଏମାନଙ୍କର ସାମ୍ରାଜ୍ୟବାଦୀ ଶକ୍ତି ସହିତ ସଂପର୍କ କେବଳ ସର୍ବଭାରତୀୟ-ଏକଚାଟିଆ-ଦଲାଲ-ପୁଂଜିପତି ଶ୍ରେଣୀ ଜରିଆରେ । ତେଣୁ, ଦେଶରେ ହେଉଥିବା ମୁନାଫାକୁ କିଏ କେତେ ପରିମାଣରେ ବାଣ୍ଟି କରିନେବ ଏଥିପାଇଁ ଗ୍ରାମାଂଚଳର ଦଲାଲ-ପୁଂଜିପତି କୃଷକ ଶ୍ରେଣୀ ଓ ସର୍ବଭାରତୀୟ-ଏକଚାଟିଆ-ଦଲାଲ-ପୁଂଜିପତି ଶ୍ରେଣୀ ମଧ୍ୟରେ ସଂଘର୍ଷ ରହିଛି ।

ଉଭୟ ଆଂଚଳିକ-ଦଲାଲ-ପୁଂଜିପତି ଶ୍ରେଣୀ ଓ ଗ୍ରାମ୍ୟାଂଚଳର ଦଲାଲ-ପୁଂଜିବାଦୀ-କୃଷକ ଶ୍ରେଣୀଙ୍କର ସ୍ଥିତି ସର୍ବଭାରତୀୟ-ଏକଚାଟିଆ-ଦଲାଲ-ପୁଂଜିପତି ଶ୍ରେଣୀର ତୁଳନାରେ ଅତି ଦୁର୍ବଳ । ପ୍ରଥମତଃ ସେମାନେ ପୁଂଜି ଓ କାରିଗରୀ କୌଶଳ ଲାଗି ସର୍ବଭାରତୀୟ-ଏକଚାଟିଆ-ଦଲାଲ-ପୁଂଜିପତି ଶ୍ରେଣୀ ଜରିଆରେ ସାମ୍ରାଜ୍ୟବାଦୀ ଶକ୍ତିଠାରେ ନିର୍ଭରଶୀଳ ଓ ତାଙ୍କ ଦ୍ୱାରା ନିୟନ୍ତ୍ରିତ । ଦ୍ୱିତୀୟତଃ ଏହି ସର୍ବଭାରତୀୟ ଶ୍ରେଣୀ ହାତରେ ରାଜନୈତିକ ତଥା ସାମରିକ ଶକ୍ତି କେନ୍ଦ୍ରୀଭୂତ । ଏହି ଦୁର୍ବଳ ସ୍ଥିତି ଯୋଗୁ ଅପେକ୍ଷାକୃତ ବେଶୀ ମୁନାଫା ସକାଶେ ସର୍ବଭାରତୀୟ ଶାସକ ଶ୍ରେଣୀ ସହିତ ଦର କଷାକଷି ପାଇଁ ଉକ୍ତ ଦୁଇଟି ଶ୍ରେଣୀର ନିଜ ଅଞ୍ଚଳର ଲୋକ ବଳଠାରୁ ଆଉ କୌଣସି ଉପାୟ ନାହିଁ । ପୁନଶ୍ଚ, ଯେହେତୁ ଏହି ଦୁଇଟି ଆଞ୍ଚଳିକ ଶ୍ରେଣୀ ମଧ୍ୟ ନିଜର ପେଟକୁ ବଢ଼ାଇବା ପାଇଁ ଓ ସାମ୍ରାଜ୍ୟବାଦୀ ଶକ୍ତିର ମୁନାଫା ବଢ଼ାଇବା ପାଇଁ ଜନଗଣଙ୍କୁ ନିର୍ମମ ଭାବେ ଶୋଷଣ କରନ୍ତି । ତେଣୁ ସେମାନଙ୍କୁ ତାଙ୍କ ପଛରେ ଏକଜୁଟ କରିବା ପାଇଁ ଗୋଟିଏ ପନ୍ଥା ଛଡ଼ା ଅନ୍ୟ କୌଣସି ରାସ୍ତା ନାହିଁ । ସେ ପନ୍ଥା ତେବେ କ'ଣ ?

ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ ଭାରତ ବର୍ଷରେ ଯେତେବେଳେ ସାମ୍ରାଜ୍ୟ-ବାଦର ପୃଷ୍ଠପୋଷକତାରେ ପୁଂଜିବାଦର ଉଦୟ ହେଲା ଓ ଏହି ପୁଂଜିବାଦ ବିଭିନ୍ନ ଅଞ୍ଚଳରେ ଧିରେ ଧିରେ ବଢ଼ିବାକୁ ଲାଗିଲା ବିଭିନ୍ନ ପ୍ରାନ୍ତରରେ ବସବାସ କରୁଥିବା ବିଭିନ୍ନ ଭାଷାଭାଷି ଓ ସଂସ୍କୃତିର ଜନଗଣଙ୍କ ମଧ୍ୟରେ ଜାତୀୟ ଚେତନାର ଉଦ୍ରେକ ହେଲା ଓ ସେମାନଙ୍କ ମଧ୍ୟରେ ଏକ ସ୍ୱତନ୍ତ୍ର ସ୍ୱାଧୀନ ରାଜ୍ୟରେ ବସବାସ କରିବା ପାଇଁ ମନୋଭାବ ସୃଷ୍ଟି ହେଲା । ବିଭିନ୍ନ ଜାତିର ଜନଗଣଙ୍କର ଏହି ଜାତୀୟ ମନୋଭାବ ସେହି ଅଞ୍ଚଳର ଆଞ୍ଚଳିକ-ଦଲାଲ-ପୁଂଜିପତି ଶ୍ରେଣୀ ଓ ଆଞ୍ଚଳିକ-ଦଲାଲ-

ପୁଂଜିବାଦୀ-କୃଷକ ଶ୍ରେଣୀ ଦ୍ୱୟଙ୍କୁ ପନ୍ଥା ଯୋଗାଇବାରେ ସୁଯୋଗ ଦେଇ । ତେଣୁ ସେହି ଶ୍ରେଣୀଦ୍ୱୟ ସର୍ବଭାରତୀୟ-ଏକଚାଟିଆ-ଦଲାଲ-ପୁଂଜିପତି ଶ୍ରେଣୀଠାରୁ ଅପେକ୍ଷାକୃତ ବେଶୀ ମୁନାଫା ସଦାଶେ ଦର କଷାକଷି ପାଇଁ ନିଜ ଜାତିର ଜନଗଣଙ୍କୁ ସ୍ୱତନ୍ତ୍ର ଜାତୀୟ ରାଜ୍ୟ ଗଠନ ପାଇଁ ଆହ୍ୱାନ ଦେଲେ ଓ ଜାତୀୟ ଆନ୍ଦୋଳନର ନେତୃତ୍ୱ ନେଲେ ।

ବିଭିନ୍ନ ଜାତିର ଜନଗଣ ଏହି ଆଞ୍ଚଳିକ-ଦଲାଲ-ପୁଞ୍ଜିପତି ଶ୍ରେଣୀ ଦ୍ୱୟଙ୍କୁ ଜାତୀୟ ଆନ୍ଦୋଳନର ନେତା ବୋଲି ସ୍ୱୀକାର କରି ଅନୁଧାବନ କଲେ ସତ ଏହି ଶ୍ରେଣୀ ଦ୍ୱୟର ଚରିତ୍ରକୁ ବୁଝିବାକୁ ସକ୍ଷମ ହେଲେ ନାହିଁ । ଏହି ଶ୍ରେଣୀଦ୍ୱୟ ଯେହେତୁ ସାମ୍ରାଜ୍ୟବାଦୀ ଶକ୍ତି ଓ ତାର ମିଥ୍ୟାମିଳିତ ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀଠାରେ ସଂପୂର୍ଣ୍ଣ ନିର୍ଭରଶୀଳ ଓ ସେମାନଙ୍କୁ ବାଦଦେଇ ସେ ଏମାନେ ବଂଚିପାରିବେ ନାହିଁ ତାହା ଜନଗଣଙ୍କ ଅଗୋଚର ଥିଲା ଓ ଏବେ ମଧ୍ୟ ଅଗୋଚର ଅଛି । ତେଣୁ, ଏହି ଆଞ୍ଚଳିକ ଶ୍ରେଣୀଦ୍ୱୟ ଯେ ସାମ୍ରାଜ୍ୟବାଦ ଶକ୍ତି ଓ ତାହାର ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀ ବିରୁଦ୍ଧରେ ସଂଗ୍ରାମ କରି ସ୍ୱତନ୍ତ୍ର ସ୍ୱାଧୀନ ଜାତୀୟ ରାଜ୍ୟଗଠନ କରି ପାରିବେ ନାହିଁ । ଏକଥା ମଧ୍ୟ ଜନଗଣଙ୍କୁ ଅଗୋଚର ଥିଲା ଓ ଏବେ ମଧ୍ୟ ଅଗୋଚର ଅଛି । ପୁନଶ୍ଚ, ଏହି ଆଞ୍ଚଳିକ ଶ୍ରେଣୀ ଦ୍ୱୟ ଯେ ନିଜର ମୁନାଫାକୁ ବଢାଇବା ସକାଶେ ସର୍ବଭାରତୀୟ ଶାସକ ଶ୍ରେଣୀଠାରେ ଖାଲି ଦର କଷାକଷି (Bargaining) ପାଇଁ ତଥାକଥିତ ସ୍ୱାଧୀନତା ପୂର୍ବରୁ ଜାତୀୟ ଆନ୍ଦୋଳନର ଡାକରା ଦେଇଥିଲେ ଓ ସ୍ୱାଧୀନତା ପରେ ମଧ୍ୟ ଏହି ଡାକରା ଦେଇ ଆସୁଛନ୍ତି ଏହା ମଧ୍ୟ ଜନଗଣଙ୍କ ଠାରେ ପୂର୍ବରୁ ଅଗୋଚର ଥିଲା ଓ ଏବେ ମଧ୍ୟ ଅଗୋଚର ଅଛି ।

ଏହି ଶ୍ରେଣୀଦ୍ୱୟ ଭାରତର ବିଭିନ୍ନ ପ୍ରାନ୍ତରରେ ଗଢି ଉଠୁଥିବା ଜାତୀୟ ଆନ୍ଦୋଳନରେ ବିଶ୍ୱାସଘାତକତା ଛଡା ଆଉ କିଛି କରି ନାହାନ୍ତି ଓ କରୁ ନାହାଁନ୍ତି । ତେଣୁ ସ୍ୱାଧୀନତା ପୂର୍ବରୁ ଓ ପରେ ଯେଉଁ ଜାତୀୟ ଆନ୍ଦୋଳନ ତେଜି ଉଠିଥିଲା ସେହି ଆନ୍ଦୋଳନ କେବଳ ଭାଷା ଅନୁଯାୟୀ ଓ ଭାରତୀୟ ୟୁନିୟନରେ ଆଉ ସ୍ୱତନ୍ତ୍ର ପ୍ରଦେଶ ଭାବେ ଗଢି ଉଠିବାରେ ସୀମିତ ରହିଲା । ଜାତୀୟ ମୁକ୍ତି ଆନ୍ଦୋଳନ ଜରିଆରେ ଭାରତୀୟ ୟୁନିୟନଠାରୁ ବାହାରି ଯାଇ ସ୍ୱତନ୍ତ୍ର ସ୍ୱାଧୀନ ରାଜ୍ୟ ଗଠନ କରିବାର ପର୍ଯ୍ୟାୟକୁ ଏ ଜାତୀୟ ଆନ୍ଦୋଳନ ଅଗ୍ରସର ହେଲା ନାହିଁ । ଫଳରେ, ଭାରତରେ ଥିବା ପ୍ରତ୍ୟେକ ଜାତୀୟ ରାଜ୍ୟ ନା ସାମ୍ରାଜ୍ୟବାଦ ଶକ୍ତିର ଶୋଷଣରୁ ମୁକ୍ତି ପାଇଲା ନା ସେମାନଙ୍କର ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀର ଶୋଷଣରୁ ମୁକ୍ତି ପାଉଛି ।

ଭାରତ ବର୍ଷର ଜାତୀୟ ଆନ୍ଦୋଳନରେ ଆଉ ଏକ ବୈଶିଷ୍ଟ୍ୟ ପରିଲକ୍ଷିତ

ହୁଏ । ଓଡ଼ିଶା ଓ ଆସାମ ଭଳି ଆଜି କେତେକ ରାଜ୍ୟରେ ସବୁଠି ଏହି ଜାତିର ଜନଗଣଙ୍କ ମଧ୍ୟରେ ଅଞ୍ଚଳ-ଦଲାଲ-ପୁଂଜିପତି କିମ୍ବା ଅଞ୍ଚଳ-ଦଲାଲ-ପୁଂଜିପତି କୃଷକ କିଛି ମାତ୍ରାରେ ଦେଖାଯାଆନ୍ତି ସେମାନେ ଅନ୍ୟ ରାଜ୍ୟଭଳି ଶ୍ରେଣୀ ଭାବରେ ଏପର୍ଯ୍ୟନ୍ତ ଗଢ଼ିଉଠି ନାହାନ୍ତି । ଏହାର କାରଣ ଅନ୍ୟ ଜାତିର ଦଲାଲ-ବେପାରୀ ଓ ଦଲାଲ-ପୁଂଜିପତିମାନେ ଆସି ଏହି ରାଜ୍ୟରେ ଏମାନଙ୍କର ଗାଦି ମାଡ଼ି ବସିଛନ୍ତି ଏବଂ ଏମାନଙ୍କର ବିକାଶରେ ଘୋର ବାଧା ଦେଉଛନ୍ତି । ତେଣୁ ଏହି ସବୁ ରାଜ୍ୟରେ ସ୍ୱାଧୀନତା ପୂର୍ବରୁ ଓ ସ୍ୱାଧୀନତା ପରେ ମଧ୍ୟବିତ୍ତ ଶ୍ରେଣୀ (Petty-Bourgeoisve)ର ବୁଦ୍ଧିଜୀବୀମାନେ ଜାତୀୟ ଆନ୍ଦୋଳନରେ ନେତୃତ୍ୱ ନେଇଥିଲେ ଓ ନେଉଛନ୍ତି । କିନ୍ତୁ, ଏହି ଶ୍ରେଣୀ ନିଜର ଦୁର୍ବଳ ସ୍ଥିତି ଯୋଗୁଁ ଏବଂ ନିଜର ସଂକୀର୍ଣ୍ଣ ଦୃଷ୍ଟିକୋଣ ଯୋଗୁଁ ଜାତୀୟ ଆନ୍ଦୋଳନର ପଣ୍ଟ, ଯେ ସାମ୍ରାଜ୍ୟବାଦ-ବିରୋଧୀ ଆନ୍ଦୋଳନ ସହିତ ଜଡ଼ିତ ଏହି ଜଟିଳ ସମସ୍ୟାକୁ ବୁଝିବାକୁ ସଂପୂର୍ଣ୍ଣ ଅକ୍ଷମ ଥିଲେ ଓ ଏବେ ମଧ୍ୟ ଅଛନ୍ତି । ତେଣୁ ଏହି ମଧ୍ୟବିତ୍ତ ଶ୍ରେଣୀ ଜାତୀୟ ଆନ୍ଦୋଳନକୁ ସାମ୍ରାଜ୍ୟବାଦ-ବିରୋଧୀ ଜାତୀୟ ମୁକ୍ତି ଆନ୍ଦୋଳନର ସ୍ରୋତକୁ ଅତୀତରେ ନେଇ ପାରିନାହାଁନ୍ତି କିମ୍ବା ଭବିଷ୍ୟତରେ ନେଇ ପାରିବେ ନାହିଁ । ଏମାନେ ସାମ୍ରାଜ୍ୟବାଦ ଶତ୍ରୁମାନଙ୍କର ଚତୁରତା ତଥା ପ୍ରଲୋଭନରେ ପଡ଼ି ସେମାନଙ୍କ ସହିତ ମିଳିମିଶି ସାଲିସ ଅତୀତରେ କରିଛନ୍ତି ଓ ଏବେ ବି କରୁଛନ୍ତି ।

ଉପରୋକ୍ତ ଆଲୋଚନା ଅନୁଯାୟୀ ଯେହେତୁ ଉଲ୍ଲେଖ କରାଯାଇଥିବା ଶ୍ରେଣୀଗୁଡ଼ିକ ଜାତୀୟ ଆନ୍ଦୋଳନର ନେତୃତ୍ୱ ନେବାପାଇଁ ସଂପୂର୍ଣ୍ଣ ଅକ୍ଷମ । ତେଣୁ ଭାରତର ଜାତୀୟ ମୁକ୍ତି ଆନ୍ଦୋଳନକୁ ସଂପୂର୍ଣ୍ଣ କରିବା ପାଇଁ ଦାୟିତ୍ୱ ରହିଲା ସର୍ବହରା ଶ୍ରେଣୀ ଉପରେ ଏବଂ ଏହି ସର୍ବହରା ଶ୍ରେଣୀର ପାର୍ଟି ସିଟା-କମ୍ୟୁନିଷ୍ଟ ପାର୍ଟି ଉପରେ । ଭାରତରେ କମ୍ୟୁନିଷ୍ଟ ପାର୍ଟିର ଗଠନ ଆରମ୍ଭ ହୁଏ ପ୍ରାୟ ୧୯୨୫ମସିହା ଠାରୁ । ତେବେ ଏହି କମ୍ୟୁନିଷ୍ଟ ପାର୍ଟି କ'ଣ ଜାତୀୟ ମୁକ୍ତି ଆନ୍ଦୋଳନର ନେତୃତ୍ୱ ନେଇ ପାରିଛି ? ବାସ୍ତବରେ ଏହା ନେଇପାରି ନାହିଁ । କାହିଁକି ନେଇପାରି ନାହିଁ ଏହାର ଉତ୍ତର ଦେବାକୁ ହେଲେ ଭାରତରେ କମ୍ୟୁନିଷ୍ଟ ଆନ୍ଦୋଳନର ଇତିହାସ ଓ ଏହାର ଆନ୍ତର୍ଜାତୀୟ କମ୍ୟୁନିଷ୍ଟ ଆନ୍ଦୋଳନ ସହିତ ସଂପର୍କ ସମ୍ବନ୍ଧରେ କିଛିଟା ସୂଚନା ଦେବା ଦରକାର ।

ଭାରତରେ କମ୍ୟୁନିଷ୍ଟ ପାର୍ଟି ଗଠନ ହେବା ପୂର୍ବରୁ କେତେକ ଭାରତୀୟ କମ୍ୟୁନିଷ୍ଟ ସୋଭିଏତ୍ ନେତୃତ୍ୱରେ ଗଠିତ କମ୍ୟୁନିଷ୍ଟ ଇଣ୍ଟରନେସନାଲ (Comintern) ସହିତ ସଂପର୍କ ରଖିଥିଲେ । ଭାରତରେ କମ୍ୟୁନିଷ୍ଟ ପାର୍ଟି ଗଠନ ହେବା ପରେ ଏହି ପାର୍ଟି କମ୍ୟୁନିଷ୍ଟ ଇଣ୍ଟରନେସନାଲର ସଭ୍ୟଭାବେ ରହି ଆସିଥିଲା । ବିଭିନ୍ନ ଦେଶରେ କିଭଳି କମ୍ୟୁନିଷ୍ଟ ବିପ୍ଳବ ଗଢ଼ିଉଠିବ ସେଥିପାଇଁ କମ୍ୟୁନିଷ୍ଟ-ଇଣ୍ଟରନେସନାଲ ପ୍ରତ୍ୟେକ ଦେଶର କମ୍ୟୁନିଷ୍ଟ ପାର୍ଟିକୁ ସେତେବେଳେ ନିର୍ଦ୍ଦେଶନା

ଦେଉଥିଲା । ଏହି କମ୍ୟୁନିଷ୍ଟ-ଇଣ୍ଟରନେସନାଲର ପ୍ରତ୍ୟେକ ଦେଶ ବିଷୟରେ ସୀମିତ ଅଭିଜ୍ଞତା ଯୋଗୁଁ ପ୍ରତ୍ୟେକ ଦେଶପାଇଁ ନିର୍ଦ୍ଦେଶନା ଯଦିଓ ପ୍ରାୟତଃ ଠିକ୍ ହେଉଥିଲା ତଥାପି ବେଳେବେଳେ ଭୁଲ ହେଉଥିଲା । ଏହି ଭୁଲକୁ ସୁଧାରିବାର ଦାୟିତ୍ୱ କେବଳ ଏକ ଦେଶୀୟ କମ୍ୟୁନିଷ୍ଟ ପାର୍ଟିର । ଯେଉଁ ଦେଶରେ କମ୍ୟୁନିଷ୍ଟ ପାର୍ଟି ତାତ୍ତ୍ୱିକ (Theory) ଓ ବ୍ୟବହାର (Practice) କ୍ଷେତ୍ରରେ ପରିପକ୍ୱ ସେ ଦେଶର କମ୍ୟୁନିଷ୍ଟ ପାର୍ଟି କମ୍ୟୁନିଷ୍ଟ-ଇଣ୍ଟରନେସନାଲର ନିର୍ଦ୍ଦେଶନାକୁ ବୈଜ୍ଞାନିକ ପଦ୍ଧତିରେ ଗ୍ରହଣ କରୁଥିଲା । ଯେଉଁ ଦେଶର କମ୍ୟୁନିଷ୍ଟ ପାର୍ଟି ତାତ୍ତ୍ୱିକ ଓ ବ୍ୟବହାର କ୍ଷେତ୍ରରେ ଅପରିପକ୍ୱ ସେ ପାର୍ଟି କମ୍ୟୁନିଷ୍ଟ-ଇଣ୍ଟରନେସନାଲର ନିର୍ଦ୍ଦେଶନାକୁ ଅନ୍ଧ ଭାବରେ ମାନି ନେଉଥିଲା । ଭାରତର କମ୍ୟୁନିଷ୍ଟ ପାର୍ଟିର ଇତିହାସ ସୂଚାଏ ଯେ ଏ ପର୍ଯ୍ୟନ୍ତ ଭାରତର କମ୍ୟୁନିଷ୍ଟ ଆନ୍ଦୋଳନ ତାତ୍ତ୍ୱିକ ଓ ବ୍ୟବହାର ଉଭୟ କ୍ଷେତ୍ରରେ ଅପରିପକ୍ୱ । ତେଣୁ ଆମ ଭାରତର କମ୍ୟୁନିଷ୍ଟ ଆନ୍ଦୋଳନରେ ବହୁ ଭୁଲ୍ ଭ୍ରାନ୍ତି ଦେଖାଯାଏ ।

ଏହି କମ୍ୟୁନିଷ୍ଟ ଆନ୍ଦୋଳନର ଅପରିପକ୍ୱତାର କାରଣ ହେଉଛି ଏହି ଆନ୍ଦୋଳନରେ ନେତୃତ୍ୱ ନେଉଥିବା ବ୍ୟକ୍ତିମାନଙ୍କର ଶ୍ରେଣୀ ଚରିତ୍ର । ଏମାନେ ବିଶେଷ କରି ସାମନ୍ତ ଓ ମଧ୍ୟବିତ୍ତ ଶ୍ରେଣୀରୁ ଆସିଛନ୍ତି । ସାମନ୍ତ ଓ ମଧ୍ୟବିତ୍ତ ଶ୍ରେଣୀରୁ ଆସି କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେବା କୌଣସି ଅପରାଧ ନୁହେଁ । କିନ୍ତୁ ଏହି ବ୍ୟକ୍ତିମାନେ ଯଦି ସାମନ୍ତ ଓ ମଧ୍ୟବିତ୍ତ ଶ୍ରେଣୀର ସୁବିଧାବାଦ ଚରିତ୍ରକୁ ବର୍ଜନ ନ କରନ୍ତି ପରନ୍ତୁ ଏହାକୁ ବଳିଷ୍ଠ ଭାବରେ ଧରି ରଖନ୍ତି ତେବେ ଏମାନେ କମ୍ୟୁନିଷ୍ଟ ଆନ୍ଦୋଳନକୁ ଉଭୟ ତାତ୍ତ୍ୱିକ ଓ ବ୍ୟବହାର ଦିଗରେ ସଠିକ୍ ନେତୃତ୍ୱ ଦେବାପାଇଁ ଅକ୍ଷମ ହୁଅନ୍ତି । ତେଣୁ କମ୍ୟୁନିଷ୍ଟ ଆନ୍ଦୋଳନର ଏମାନେ ମହାନ୍ କ୍ଷତି କରନ୍ତି । ଭାରତ ବର୍ଷରେ କମ୍ୟୁନିଷ୍ଟ ଆନ୍ଦୋଳନର ବିପର୍ଯ୍ୟୟର ପ୍ରଧାନ କାରଣ ଏହିମାନେ ।

ତଥାକଥିତ-ସ୍ୱାଧୀନତା ପୂର୍ବରୁ କମ୍ୟୁନିଷ୍ଟ ପାର୍ଟି ଥିଲା ଅବିଭକ୍ତ । ଏହି ସମୟରେ ଯେତେବେଳେ ଭାରତ ବର୍ଷରେ ବିଭିନ୍ନ ଜାତିର ଜାତୀୟ ଆନ୍ଦୋଳନ ତେଜି ଉଠିଲା ସେତେବେଳେ ଏମାନେ କେବଳ ଏହି ଜାତୀୟ ଆନ୍ଦୋଳନକୁ ସମର୍ଥନ କରୁ ନ ଥିଲେ । ଏଥିରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ ମଧ୍ୟ । ଏକ ଜାତିର ଆତ୍ମ ନିୟନ୍ତ୍ରଣ ଅଧିକାର ଓ ଏକ ଜାତି ଏକ ସ୍ୱାଧୀନ ରାଜ୍ୟ ଭାବେ ରହିବାର ଅଧିକାରକୁ ଏମାନେ ସ୍ୱୀକାର କରୁଥିଲେ । ଏପରି କି ଭାରତ ଓ ପାକିସ୍ଥାନର ବିଭାଜନକୁ ମଧ୍ୟ ସମର୍ଥନ କରୁଥିଲେ । ଏମାନଙ୍କ ମଧ୍ୟରେ ସମସ୍ତ ସାମନ୍ତୀ ଓ ମଧ୍ୟବିତ୍ତ ଦୁର୍ବଳତା ଥିବା ସତ୍ତ୍ୱେ ଏମାନେ ଅନେକାଂଶରେ ସଠିକ ଭୂମିକା ନେଉଥିଲେ । ଏହାର କାରଣ ସେତେବେଳର ଷ୍ଟାଲିନ୍‌ଙ୍କ ନେତୃତ୍ୱରେ କମ୍ୟୁନିଷ୍ଟ ଇଣ୍ଟରନେସନାଲ୍ ବହୁ ପ୍ରଭାବଶାଳୀ ଓ ବିପ୍ଳବୀ ରାସ୍ତାରେ ଥିଲା ।

ଦ୍ୱିତୀୟ ବିଶ୍ୱଯୁଦ୍ଧପରେ ପରେ ଆନ୍ତର୍ଜାତୀୟ କମ୍ୟୁନିଷ୍ଟ ଆନ୍ଦୋଳନରେ ବହୁ ବିପର୍ଯ୍ୟୟ ଘଟିଲା । ଷ୍ଟାଲିନ୍‌ଙ୍କ ଜୀବଦଶା ସମୟରେ ବିଭିନ୍ନ କାରଣରୁ କମ୍ୟୁନିଷ୍ଟ ଇଣ୍ଟରନେସନାଲକୁ ଭାଙ୍ଗି ଦିଆଗଲା । ଷ୍ଟାଲିନ୍‌ଙ୍କ ମୃତ୍ୟୁପରେ ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ମଧ୍ୟ ଅଧଃପତନ ଘଟିଲା । ଷ୍ଟାଲିନଙ୍କ ଉତ୍ତରାଧିକାରୀ କ୍ରୁଶ୍ଚେଭ ବିଶ୍ୱର ଏକ ନୂତନ ଅବସ୍ଥାର ଆଳ ନେଇ ମାର୍କସବାଦର ବହୁ ମୌଳିକ ତତ୍ତ୍ୱକୁ ଖଣ୍ଡନ କଲେ । ବିନା ସଶସ୍ତ୍ର ସଂଗ୍ରାମ କରିଆଡେ ଶାନ୍ତିପୂର୍ଣ୍ଣ ଉପାୟରେ ତଥା ସଂସଦୀୟ ରାସ୍ତାରେ ସମାଜ ପୁଂଜିବାଦରୁ ସମାଜବାଦ ଆଡକୁ ଗତିକରି ପାରିବ ବୋଲି କହିଲେ । ମୋଟରେ ସୋଭିଏତ କମ୍ୟୁନିଷ୍ଟ ପାର୍ଟି ମାର୍କସବାଦକୁ ବର୍ଜନ କରି ଆଧୁନିକ ସଂଶୋଧନବାଦ (ମାର୍କସବାଦ ନାମରେ ପୁଂଜିବାଦର ତତ୍ତ୍ୱକୁ )କୁ ଗ୍ରହଣ କଲେ । ଋଷିଆରେ ଷ୍ଟାଲିନ୍‌ଙ୍କୁ ମୂଳପୋଛ କଲେ । ସୋଭିଏତ କମ୍ୟୁନିଷ୍ଟ ପାର୍ଟିର ଏହି ସଂଶୋଧନବାଦ ନୀତିକୁ ଚୀନ ଓ ଆଲବାନିଆ କମ୍ୟୁନିଷ୍ଟ ପାର୍ଟିଦ୍ୱୟ ଘୋର ବିରୋଧ କଲେ । କିନ୍ତୁ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ନେତୃବୃନ୍ଦଙ୍କ ମଧ୍ୟରେ କେତେକ ସୋଭିଏତ କମ୍ୟୁନିଷ୍ଟ ପାର୍ଟିକୁ କମ୍ୟୁନିଷ୍ଟ ପାର୍ଟି ବୋଲି ଗ୍ରହଣ କଲେ ଓ ଆଉ କେତେକ ଏହାକୁ ସଂଶୋଧନବାଦୀ ପାର୍ଟି ବୋଲି ଗ୍ରହଣ କଲେ । ୧୯୬୨ରେ ଯେତେବେଳେ ଆମେରିକାର ଚକ୍ରାନ୍ତରେ ଭାରତ-ଚୀନ ଯୁଦ୍ଧ ଲାଗିଗଲା, ପୁନଶ୍ଚ ଭାରତୀୟ କମ୍ୟୁନିଷ୍ଟ ପାର୍ଟିରେ ଦୁଇମତ ଦେଖାଦେଲା । କେତେକ ଭାରତକୁ ଚୀନ ଆକ୍ରମଣ କରିଛି ବୋଲି ମତ ଦେଲେ ଓ ଅନ୍ୟାନ୍ୟ ଭାରତ ଚୀନକୁ ଆକ୍ରମଣ କରିଛି ବୋଲି ମତ ଦେଲେ । ଏହି ଦୁଇଟି କାରଣ ଛଡ଼ା ଆଉ ଅନ୍ୟାନ୍ୟ କାରଣ ଯୋଗୁ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଦୁଇ ଭାଗରେ ବିଭକ୍ତ ହେଲା । ତାହା ହେଉଛି **CPI** ଓ **CPI (M)** ।

**CPI** ଲଙ୍ଗଳା ଭାବେ ସଂଶୋଧନବାଦୀ ସୋଭିଏତ କମ୍ୟୁନିଷ୍ଟ ପାର୍ଟିକୁ ସଚ୍ଚା କମ୍ୟୁନିଷ୍ଟ ପାର୍ଟି ବୋଲି ଗ୍ରହଣ କରିନେଲା । ଫଳରେ ଭାରତରେ କମ୍ୟୁନିଷ୍ଟ ବିପ୍ଲବ ପାଇଁ ସଶସ୍ତ୍ର ସଂଗ୍ରାମର ରାସ୍ତା ଛାଡ଼ି ସଂସଦୀୟ ରାସ୍ତା ଗ୍ରହଣ କରିନେଲା । **CPI (M)** ପାର୍ଟି ଯଦିଓ ସୋଭିଏତ କମ୍ୟୁନିଷ୍ଟ ପାର୍ଟିକୁ ସଂଶୋଧନବାଦୀ ପାର୍ଟି ବୋଲି ପରିଗଣିତ କଲା ଏବଂ ସଶସ୍ତ୍ର ସଂଗ୍ରାମର ରାସ୍ତାକୁ ନୀତିଗତ ଭାବେ ମାନିନେଲା । କିନ୍ତୁ କାର୍ଯ୍ୟରେ ସଶସ୍ତ୍ର ସଂଗ୍ରାମର ରାସ୍ତାକୁ ବର୍ଜନ କରି ସଂସଦୀୟ ରାସ୍ତାକୁ ଲାଗି ରହି ଅଛିଲା ।

ସୋଭିଏତ କମ୍ୟୁନିଷ୍ଟ ପାର୍ଟି ସଂଶୋଧନବାଦୀ ରାସ୍ତାରେ ଯିବା ଫଳରେ ସ୍ୱାଭାବିକ ଭାବେ ପ୍ରକିସ୍ଥ କ୍ରମେ ଏକ ସାମ୍ରାଜ୍ୟବାଦୀ ଶକ୍ତି ଯାହାକୁ କମ୍ୟୁନିଷ୍ଟମାନେ ସାମାଜିକ-ସାମ୍ରାଜ୍ୟବାଦୀ (Social-imperialist) ବୋଲି କହନ୍ତି ] ରେ ପରିଣତ

ହେଲ । ଚୀନ ଓ ଅଲବାନିଆର କମ୍ୟୁନିଷ୍ଟ ପାର୍ଟିଦ୍ୱୟ ସୋଭିଏତ କମ୍ୟୁନିଷ୍ଟ ପାର୍ଟିକୁ ଖୋଲ୍ ଖୋଲି ଭାବେ ସାମାଜିକ-ସାମ୍ରାଜ୍ୟବାଦୀ ପାର୍ଟି ବୋଲି ଘୋଷଣା କଲେ ।

ଷ୍ଟାଲିନଙ୍କ ସମୟରେ ଯେଉଁ ସୋଭିଏତ କମ୍ୟୁନିଷ୍ଟ ପାର୍ଟି ବିଶ୍ୱରେ ବିଭିନ୍ନ ଦେଶର ସ୍ୱାଧୀନତା ତଥା ସର୍ବହରା ଆନ୍ଦୋଳନକୁ ସମସ୍ତ ପ୍ରକାର ସାହାଯ୍ୟ ଓ ସମର୍ଥନ ଚଳାଇ ଆସିଥିଲା କ୍ରୁଶ୍ଚେଭଙ୍କ ନେତୃତ୍ୱରେ ସେହି କମ୍ୟୁନିଷ୍ଟ ପାର୍ଟି ନିଜର ସ୍ୱାର୍ଥ ସକାଶେ ବିଭିନ୍ନ ଦେଶରେ ଉତ୍ପୀଡନ ଚଳାଇଥିବା ସାମ୍ରାଜ୍ୟବାଦୀ ଶକ୍ତି ସହିତ ହାତ ମିଳାଇଲା । ଖାଲି ସେତିକି ନୁହେଁ । ନିଜର ସାମ୍ରାଜ୍ୟବାଦୀ ସ୍ୱାର୍ଥ ସକାଶେ ଚେକୋସ୍ଲୋଭାକିଆ ଆଦି କେତେକ ଦେଶର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କଲା ।

CPI (M) ସର୍ବଦା ସୋଭିଏତ କମ୍ୟୁନିଷ୍ଟ ପାର୍ଟିକୁ ସଂଶୋଧନବାଦୀ ବୋଲି ଆଖ୍ୟା ଦେଇ କିନ୍ତୁ କାର୍ଯ୍ୟତଃ ସୋଭିଏତ କମ୍ୟୁନିଷ୍ଟ ପାର୍ଟିର ସମସ୍ତ କାର୍ଯ୍ୟକୁ ସମାଜବାଦକୁ ସୁଦୃଢ଼ କରୁଛି ବୋଲି ଘୋଷଣା କରି ଆସିଛି । ଅର୍ଥାତ CPI(M) ଚନ୍ତ୍ରାଳେ ଜଣେ ବ୍ୟକ୍ତି ନୀତିଗତ ଭାବେ ବେଶ୍ୟା ବୃତ୍ତିକୁ ଗ୍ରହଣ କଲେ ମଧ୍ୟ କାର୍ଯ୍ୟରେ କିନ୍ତୁ ଏକ ସାଧୁର କାର୍ଯ୍ୟ କରିପାରିବ !

ସଂକ୍ଷେପରେ CPI ଓ CPI(M) ଉଭୟ ପାର୍ଟିର କଥାରେ ଯଦିଓ କିଛିଟା ଭିନ୍ନ ପରିଲକ୍ଷିତ ହୁଏ କିନ୍ତୁ କାର୍ଯ୍ୟରେ ଉଭୟ ମାର୍କସବାଦ ବିରୋଧୀ । ଏମାନେ ଉଭୟ ସଂଶୋଧନବାଦୀ [ଜଣେ ପୁରା ଲଗ୍ନ ତ ଅନ୍ୟ ଜଣେ ସାମାନ୍ୟ ଆବୃତ] । ଅର୍ଥାତ ଏହି ଉଭୟ ପାର୍ଟି ସୋଭିଏତ-ସାମ୍ରାଜ୍ୟବାଦର ଦଲାଲ ପାର୍ଟି ।

ଉକ୍ତ ଦୁଇଟି ପାର୍ଟିର ନେତୃତ୍ୱର ଶ୍ରେଣୀ ଚରିତ୍ର ସାମନ୍ତୀ ଓ ମଧ୍ୟ-ବିତ୍ତ ଶ୍ରେଣୀର ହୋଇଥିବାରୁ ସୋଭିଏତ କମ୍ୟୁନିଷ୍ଟ ପାର୍ଟିର ପୁଂଜିବାଦୀ ତଥା ସାମ୍ରାଜ୍ୟ-ବାଦୀ ନୀତି ଏମାନଙ୍କୁ ସୁହାଇଲା । ତେଣୁ ଏହି ଦୁଇଟି ପାର୍ଟି ଭାରତର ସ୍ୱାଧୀନତାକୁ "ଏ ଆଜାଦୀ ଝୁଟା ହୈ" (ଏ ସ୍ୱାଧୀନତା ମିଥ୍ୟା ଅଟେ ) ବୋଲି ପୂର୍ବରୁ କହୁଥିବା ସ୍ଥଳେ ଆଜି ସେମାନେ ଘୋଷଣା କରନ୍ତି ଯେ ଭାରତ ଏକ ସ୍ୱାଧୀନ ଦେଶ । ଏମାନେ 'ସ୍ୱାଧୀନତା' ପୂର୍ବରୁ ଭାରତକୁ ଏକ ବହୁଜାତୀୟ ରାଜ୍ୟ କହୁଥିବାସ୍ଥଳେ, ଏପରିକି ସ୍ୱାଧୀନତା ପରେ ପରେ ପ୍ରତ୍ୟେକ ଜାତୀୟ ଆନ୍ଦୋଳନକୁ ସାହାଯ୍ୟ ଓ ସମର୍ଥନ କରୁଥିବାସ୍ଥଳେ ଓ ପ୍ରତ୍ୟେକ ଜାତି ସ୍ୱାଧୀନ ଭାବେ ନିଜକୁ ଗଠନ କରିବାର ଅଧିକାରକୁ ସାବ୍ୟସ୍ତ କରୁଥିବାସ୍ଥଳେ ଆଜି ଠିକ୍ ଓଲଟା କହୁଛନ୍ତି । ସାମ୍ରାଜ୍ୟବାଦର ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀ ଭଳି ଆଜି ପ୍ରତ୍ୟେକ ଜାତୀୟ ଆନ୍ଦୋଳନକୁ ବିଚ୍ଛିନ୍ନତାବାଦୀ, ଆତଙ୍କବାଦୀ, ବୋଲି ଆଖ୍ୟା ଦେଉଛନ୍ତି ଓ ଏହା ପଛରେ

ସାମ୍ରାଜ୍ୟବାଦର ହାତ ଅଛି ବୋଲି ଏମାନେ ଚିତ୍କାର କରୁଛନ୍ତି । ଉକ୍ତ ପାର୍ଟି ଦ୍ୱୟର ନେତୃତ୍ୱ ସାମ୍ରାଜ୍ୟବାଦର ଦଲାଲ ସର୍ବଭାରତୀୟ ନାୟକ ଶ୍ରେଣୀର "ଜାତୀୟ ସଂହତି", "ଏକ ଭାରତ", "ଅଖଣ୍ଡ ଭାରତ' ର ସ୍ଲୋଗାନ ସହିତ ସ୍ୱର ମିଳାଉଛନ୍ତି । ତେଣୁ ଏହି ଦୁଇଟି ପାର୍ଟିର ନେତୃତ୍ୱକୁ ବିଶ୍ୱ ସାମ୍ରାଜ୍ୟବାଦର ଦଲାଲ ପାର୍ଟି ବୋଲି ଆଖ୍ୟା ଦେଲେ କୌଣସି ଭୁଲ ହେବ ନାହିଁ । ତେଣୁ ଏମାନଙ୍କ ଠାରୁ କୌଣସି ସତ୍ୟ ଜାତୀୟ ମୁକ୍ତି ଆନ୍ଦୋଳନ ପାଇଁ ସାହାଯ୍ୟ ଓ ସମର୍ଥନ ଆଶା କରିବା ବୃଥା ।

ଆପଣଙ୍କ ମନରେ ପ୍ରଶ୍ନ ଉଠୁଥିବ ଯେ CPI ଓ CPI(M) ପାର୍ଟିଦ୍ୱୟ ଯେଉଁମାନେ କି ଦିନେ ଭାରତର ସ୍ୱାଧୀନତାକୁ "ଝୁଟା ଆଜାଦ" ବୋଲି କହୁଥିଲେ ଆଜି ସେମାନେ କାହିଁକି ଭାରତକୁ ସ୍ୱାଧୀନ ବୋଲି କହୁଛନ୍ତି ?

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେପରେ ବିଶ୍ୱ ସାମ୍ରାଜ୍ୟବାଦର ବିଭିନ୍ନ ଶକ୍ତିମାନଙ୍କ ମଧ୍ୟରେ ବିଶ୍ୱ ବଜାରର ପୁନର୍ବଣ୍ଟନ ଆରମ୍ଭ ହେଲା । ପୂର୍ବରୁ ଭାରତ ଯାହା ବ୍ରିଟିଶର ଏକଚାଟିଆ ବଜାର ହୋଇ ରହିଥିଲା ତାହା ଆଉ ରହିଲା ନାହିଁ । ଭାରତ ଭଳି ନବ-ଉପନିବେଶିକ ଦେଶରେ ପାଶ୍ଚାତ୍ୟ-ସାମ୍ରାଜ୍ୟବାଦର ବିଭିନ୍ନ ଶକ୍ତି ବିଶେଷତଃ ଆମେରିକୀୟ ସାମ୍ରାଜ୍ୟବାଦ (ସେମାନଙ୍କ ମଧ୍ୟରେ ଚୁକ୍ତି ଅନୁସାରେ) ଭାରତରେ ପ୍ରବେଶ କଲା । ପୁନଶ୍ଚ, ସୋଭିଏତ ରୁଷ କ୍ରୁଶ୍ଚେଭଙ୍କ ନେତୃତ୍ୱରେ ଯେତେବେଳେ ଏକ ସାମ୍ରାଜ୍ୟବାଦୀ ଦେଶରେ ପରିଣତ ହେଲା ସେତେବେଳେ ପାଶ୍ଚାତ୍ୟ ସାମ୍ରାଜ୍ୟବାଦୀ ଶକ୍ତି ଓ ସୋଭିଏତ ସାମ୍ରାଜ୍ୟବାଦୀ ଶକ୍ତି ମଧ୍ୟରେ ସାଲିସ୍ ଅନୁସାରେ ସୋଭିଏତ ସାମ୍ରାଜ୍ୟବାଦ ଭାରତ ବର୍ଷରେ ଅନୁପ୍ରବେଶ କଲା । CPI ଓ CPI(M) ନେତୃତ୍ୱ ଯେ କି ସୋଭିଏତ ସାମ୍ରାଜ୍ୟବାଦର ଦଲାଲ ହୋଇସାରିଛନ୍ତି ସେମାନେ ବଡ ଅଡୁଆରେ ପଡ଼ିଲେ । ଭାରତକୁ ଯଦି ସେମାନେ ପରାଧୀନ ବୋଲି କହନ୍ତି ତେବେ ସେମାନଙ୍କୁ ପ୍ରଶ୍ନ କରାଯିବ । "ଭାରତ ଭଳି ସାମ୍ରାଜ୍ୟବାଦରେ କବଳିତ ପରାଧୀନ ଦେଶରେ ସୋଭିଏତ ଭଳି ସମାଜବାଦୀ ଦେଶ ଶାନ୍ତିପୂର୍ଣ୍ଣ ଉପାୟରେ କିଭଳି ଢୁକିଲା ? ସାମ୍ରାଜ୍ୟବାଦରେ କବଳିତ ପରାଧୀନ ଦେଶରେ ଶାନ୍ତିପୂର୍ଣ୍ଣ ଉପାୟରେ କେବଳ ଆଉ ଏକ ସାମ୍ରାଜ୍ୟବାଦୀ ଦେଶ ପଶିପାରେ । ଯଦି ଭାରତ ପରାଧୀନ ତେବେ ସୋଭିଏତ ଦେଶ ଏକ ସାମ୍ରାଜ୍ୟବାଦୀ ଦେଶ । ଅଥବା, ସୋଭିଏତ ଦେଶ ସମାଜବାଦୀ ଦେଶ ତେବେ ଭାରତ ସ୍ୱାଧୀନ ।" ଦଲାଲ ବା କ'ଣ ନ କରିପାରେ ? ନିଜର ପ୍ରଭୁର ସ୍ୱାର୍ଥ ସକାଶେ ଓ ନିଜର ସ୍ୱାର୍ଥ ସକାଶେ ନିଜର ପୂର୍ବମତକୁ ବଦଳାଇବା ପାଇଁ କୁଣ୍ଠାବୋଧ କରେନା । ତାହାହିଁ ହେଲା । CPI ଓ CPI(M)ର ନେତୃତ୍ୱ ସେମାନଙ୍କର ପ୍ରଭୁ ସୋଭିଏତ ଦେଶର ବାଘ ଚେହେରକୁ ଲୁଚାଇବାକୁ ଯାଇ ତାହାକୁ ସମାଜବାଦୀର ମୁଖା ପିନ୍ଧାଇଲେ । ଫଳରେ ସେମାନେ ଯେଉଁ ଭାରତକୁ ପରାଧୀନ ବୋଲି ଏକଦା କହୁଥିଲେ ପୁନଶ୍ଚ

ତାହାଙ୍କୁ ନେବ, ସ୍ୱାଧୀନ ବୋଲି କହିବା ପାଇଁ ବାଧହେଲେ । ତେଣୁ ସାମ୍ରାଜ୍ୟ-ବାଦର ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀ ଭାରତ ସ୍ୱାଧୀନ ବୋଲି ସେଉଁ କାର୍ତ୍ତନ କରି ଅସିଛି ସେହି କାର୍ତ୍ତନରେ CPI ଓ CPI(M) ନେତୃତ୍ୱ ଝାଞ୍ଜ (ଗିନି) ବଜାଇବାକୁ ବାଧ୍ୟହେଲ ।

ପୁନଶ୍ଚ, ପ୍ରଶ୍ନ ଉଠିପାରେ ଯେଉଁ CPI, CPI (M) ପୂର୍ବରୁ ଭାରତର ପ୍ରତ୍ୟେକ ଜାତୀୟ ଆନ୍ଦୋଳନକୁ ସାହାଯ୍ୟ ଓ ସମର୍ଥନ କରି ଆସୁଥିଲେ ଓ ପ୍ରତ୍ୟେକ ଜାତି ସ୍ୱାଧୀନ ଭାବେ ଅଲଗା ହେବା ପାଇଁ ତାହାର ଅଧିକାରକୁ ସାବ୍ୟସ୍ତ କରି ଆସୁଥିଲେ ଆଜି ସେ ସମସ୍ତ ଆନ୍ଦୋଳନକୁ ସେମାନେ କାହିଁକି ବିରୋଧ କରୁଛନ୍ତି ?

ସୋଭିଏତ ସାମ୍ରାଜ୍ୟବାଦ ଯେତେବେଳେ ଭାରତରେ ଅନୁପ୍ରବେଶ କଲା ସେତେବେଳେ ବିଶ୍ୱରେ ତଥା ଭାରତୀୟ ଜନଗଣଙ୍କ ସମ୍ମୁଖରେ ନିଜର ସମାଜବାଦୀ ମୁଖାକୁ ବଞ୍ଚାଇ ରଖିବାପାଇଁ ତାହାର ପୁଞ୍ଜି ଘରୋଇ ଶିଳ୍ପୋଦ୍ୟୋଗ (Private-Sector)ରେ ନ ଲଗାଇ ରାଷ୍ଟ୍ରାୟତ୍ତ ଶିଳ୍ପୋଦ୍ୟୋଗ ( Public Sector )ରେ ବିନିଯୋଗ କଲା । କିନ୍ତୁ ସମସ୍ତେ ବିଦିତ ଯେ ରାଷ୍ଟ୍ରାୟତ୍ତ ଶିଳ୍ପୋଦ୍ୟୋଗ କେବଳ ଘରୋଇ-ପୁଞ୍ଜିପତିର ସେବାରେ ଲାଗେ । ତେଣୁ ସୋଭିଏତ୍-ସାମ୍ରାଜ୍ୟବାଦୀ ଶକ୍ତି ନିଜର ମୁନାଫା ପାଇଁ ଖାଲି ଭାରତର ବିଭିନ୍ନ ଦଲାଲ ପୁଞ୍ଜିପତିଙ୍କର ହାତମୁଠାକୁ ହାତ କଲା ନାହିଁ ଆହୁରି ମଧ୍ୟ ଭାରତରେ ଅମଲା-ପୁଞ୍ଜିପତି-ଶ୍ରେଣୀ ଭଳି ( Bureaucratic Capitalist Class ) ଏକ ନୂତନ ଦଲାଲ ଶ୍ରେଣୀ ସୃଷ୍ଟି କରିବାରେ ମୂଳଦୁଆ ପକାଇଲା । ସୋଭିଏତ୍ ସାମ୍ରାଜ୍ୟବାଦ ଏହାର ଦଲାଲ ଅମଲା-ପୁଞ୍ଜିପତି-ଶ୍ରେଣୀଙ୍କର ପୁଞ୍ଜି ଯେହେତୁ ଭାରତର ବିଭିନ୍ନ ପ୍ରାନ୍ତରରେ ବିନିଯୋଗ ହୋଇଛି ଏବଂ ଯଦି ଏହି ବିଭିନ୍ନ ପ୍ରାନ୍ତର ଜାତୀୟ-ମୁକ୍ତି-ଆନ୍ଦୋଳନରେ ଉଦ୍‌ବୁଦ୍ଧ ହୋଇ ସ୍ୱାଧୀନ ରାଜ୍ୟ ଭାବେ ଅଲଗା ହୋଇ ଯାଆନ୍ତି । ତେବେ ସୋଭିଏତ୍ ସାମ୍ରାଜ୍ୟବାଦ ଓ ଏମାନଙ୍କର ଦଲାଲ ବିଭିନ୍ନ ପ୍ରାନ୍ତରରେ ସେମାନଙ୍କର ବଜାରକୁ ହରାଇବେ । ଅର୍ଥାତ ସେମାନେ ଏହି ବଜାରରୁ ଉଠାଉଥିବା ମୁନାଫା ହରାଇବେ । ତେଣୁ ଭାରତ ବର୍ଷରେ କୌଣସି ଜାତୀୟ ଆନ୍ଦୋଳନ ମୁଣ୍ଡ ଟେକିଲେ ଏମାନେ ଭୀତତ୍ରସ୍ତ ହୁଅନ୍ତି । CPI ଓ CPI (M)ର ନେତୃତ୍ୱ ଯେହେତୁ ଏହି ସାମ୍ରାଜ୍ୟବାଦୀ ଶକ୍ତି ତଥା ସେମାନଙ୍କର ଦଲାଲ ଅମଲା-ପୁଞ୍ଜିପତି ଶ୍ରେଣୀର ରାଜନୈତିକ ପ୍ରତିନିଧି ତେଣୁ ଜାତୀୟ ଆନ୍ଦୋଳନକୁ ବିରୋଧ କରିବା ଛଡା ତାଙ୍କର ଅନ୍ୟଗତି ନାହିଁ । ତେଣୁ ଏହି ଉଭୟ ପାର୍ଟିଦ୍ୱୟର ନେତୃତ୍ୱ ତଥାକଥିତ ସ୍ୱାଧୀନତା ପୂର୍ବରୁ ଓ ଠିକ୍ ପରେ ପରେ ଯଦିଓ ପ୍ରତ୍ୟେକ ଜାତୀୟ ଆନ୍ଦୋଳକୁ ସମର୍ଥନ କରି ଆସୁଥିଲେ କିନ୍ତୁ ଏବେ ସେମାନେ ସେମାନଙ୍କର କମ୍ୟୁନିଷ୍ଟ ଚରିତ୍ର ନଷ୍ଟ କରିଥିବା ହେତୁ ଓ ସେମାନଙ୍କ ମଧ୍ୟରେ ଦଲାଲି ଚରିତ୍ରକୁ ସ୍ଥାନ ଦେଇଥିବା ହେତୁ ସେମା-

ନଙ୍କର ପୂର୍ବସ୍ୱରକୁ ବଦଳାଇବାକୁ ବାଧ୍ୟ ହୋଇଛନ୍ତି । ସେଥିପାଇଁ ସାମ୍ରାଜ୍ୟବାଦର ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀର "ଜାତୀୟ ସଂହତି"ର ସ୍ଲୋଗାନ ସହିତ CPI, CPI(M)ର ନେତୃତ୍ୱ ସ୍ୱର ମିଳାଇବାକୁ ବାଧ୍ୟ ହୋଇଛନ୍ତି ।

CPI(M) ପାର୍ଟିର ନେତୃତ୍ୱର ଦୋମୁହାଁ ନୀତିଯୋଗୁଁ ୧୯୬୭ ବେଳକୁ ଏହି ପାର୍ଟିର ବିଭାଜନ ପ୍ରକ୍ରିୟା ଆରମ୍ଭ ହୋଇଗଲା ନକ୍ସାଲବାଡ଼ିର ସଶସ୍ତ୍ର ସଂଗ୍ରାମରୁ । CPI(M) ପାର୍ଟିର ନେତୃତ୍ୱ ଯଦିଓ ନୀତିଗତ ଭାବେ ସଶସ୍ତ୍ର ସଂଗ୍ରାମକୁ ମାନିନେଇ ଥିଲା, କିନ୍ତୁ କାର୍ଯ୍ୟତଃ CPI (M) ପାର୍ଟିର କର୍ମୀମାନଙ୍କ ଦ୍ୱାରା ପରିଚାଳିତ ନକ୍ସାଲ ବାଡ଼ିର ସଶସ୍ତ୍ର ଆନ୍ଦୋଳନକୁ ଘୋର ବିରୋଧ କଲା ତଥା କଂଗ୍ରେସ ପାର୍ଟି ସହିତ ହାତ ମିଳାଇ ନକ୍ସାଲ ବାଡ଼ି ଆନ୍ଦୋଳନ ଉପରେ ଦମନ ଲୀଳା ଆରମ୍ଭ କରିଦେଲା । ଫଳରେ ୧୯୬୯ରେ CPI (M)ରୁ ଆଉ ଏକ ପାର୍ଟି ଜନ୍ମନେଲା । ସେ ପାର୍ଟି ହେଉଛି CPI (M-L) ବା ନକ୍ସାଲ ପାର୍ଟି ।

ଏହି ବିପ୍ଲବୀ ପାର୍ଟି ଯଦିଓ CPI, CPI (M) ଠାରୁ ଅନେକାଂଶରେ ରାଜନୈତିକ ଭାବେ ଉନ୍ନତ ଓ ସୁବିଧାବାଦରୁ ମୁକ୍ତ । ତଥାପି ଏମାନେ ରାଜନୈତିକ ଅପରିପକ୍ୱତା ଓ ସୁବିଧାବାଦର ପରିଧିକୁ ଅତିକ୍ରମ କରି ପାରି ନାହାନ୍ତି । ଏମାନଙ୍କର ପ୍ରଧାନ ରାଜନୈତିକ ଦୁର୍ବଳତା ହେଉଛି ଭାରତ ବର୍ଷରେ ପ୍ରଧାନ ଶତ୍ରୁ କିଏ ନିର୍ଣ୍ଣୟ କରିବାରେ । ଯେତେବେଳେ ଭାରତ ବର୍ଷରେ ପ୍ରଧାନ ଶତ୍ରୁ ହେଉଛି ସାମ୍ରାଜ୍ୟବାଦ (ପାଶ୍ଚାତ୍ୟ ସାମ୍ରାଜ୍ୟବାଦ ତଥା ସୋଭିଏତ ସାମ୍ରାଜ୍ୟବାଦ) ସେତେବେଳେ ଏମାନେ କହନ୍ତି ଯେ ଭାରତ ବର୍ଷର ପ୍ରଧାନ ଶତ୍ରୁ ହେଉଛି ସାମନ୍ତବାଦ । ଏହି ରାଜନୈତିକ ଅପରିପକ୍ୱତା ହେତୁ ଏମାନେ ନକ୍ସାଲ ବାଡ଼ି ଆନ୍ଦୋଳନରେ ପରାସ୍ତ ହେଲେ ତଥା ଏମାନଙ୍କର ନେତୃତ୍ୱ ମଧ୍ୟରେ ସୁବିଧାବାଦ ଥିବା ଯୋଗୁ ଏମାନେ ଶେଷରେ ଟୁକୁରା ଟୁକୁରା ହୋଇଗଲେ ।

ଏହି ରାଜନୈତିକ ଅପରିପକ୍ୱତା ହେତୁ ଭାରତର ବିଭିନ୍ନ ଜାତିର ଜାତୀୟ ଆନ୍ଦୋଳନକୁ ଯଦିଓ ନକ୍ସାଲମାନେ ସମର୍ଥନ କରନ୍ତି କିନ୍ତୁ ଏହାକୁ ନେତୃତ୍ୱ ଦେବାପାଇଁ ଏମାନଙ୍କର ଦୃଷ୍ଟିକୋଣ ସୀମିତ ଓ ସଂକୁଚିତ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପରେ ପ୍ରତ୍ୟେକ ଜାତିର ଜାତୀୟ ମୁକ୍ତି ଆନ୍ଦୋଳନ ଯେ ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନ ସହିତ ଜଡ଼ିତ ଓ ଭାରତରେ ଏହା ମଧ୍ୟ ପ୍ରଯୁଜ୍ୟ ଏକଥା ଏମାନେ ବୁଝିବାକୁ ଅକ୍ଷମ । ଯଦି ଏମାନେ ସଠିକ୍ ଭାବେ ନିର୍ଣ୍ଣୟ କରି ପାରିଥାନ୍ତେ ଯେ ଭାରତର ପ୍ରଧାନ ଶତ୍ରୁ ହେଉଛି ସାମ୍ରାଜ୍ୟବାଦ ଓ ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନ ହେଉଛି ଭାରତ ବର୍ଷରେ ବିପ୍ଲବର ପ୍ରଥମ ପର୍ଯ୍ୟାୟ ତେବେ ସେମାନେ ଭାରତର ଅନ୍ତ ସମସ୍ତ ଜାତୀୟ ମୁକ୍ତି ଆନ୍ଦୋଳନକୁ ସାମ୍ରାଜ୍ୟବାଦ ବିରୋଧୀ

ଆନ୍ଦୋଳନରେ ପରିଣତ କରିଥାନ୍ତେ ଓ ଏହି ଜାତୀୟ ମୁକ୍ତି ଆନ୍ଦୋଳନରେ ନେତୃତ୍ୱ ନେଇଥାନ୍ତେ । କିନ୍ତୁ ଯେହେତୁ ଏମାନେ ଭାରତର ପ୍ରଧାନ ଶତ୍ରୁକୁ ସାମନ୍ତବାଦ ବୋଲି ଧରିନେଇଛନ୍ତି ଓ ଏହି ଅନୁସାରେ ସେମାନେ ପ୍ରାୟ ଗ୍ରାମାଞ୍ଚଳରେ ମାଟି କାମୁଡ଼ି ପଡ଼ିଛନ୍ତି । ତେଣୁ ଜାତୀୟ ମୁକ୍ତି ଆନ୍ଦୋଳନକୁ ଏମାନେ ଶୃଙ୍ଖଳ ସମର୍ଥନ ଦେଇ ଆସୁଛନ୍ତି ସିନା କିନ୍ତୁ ଏହାର ନେତୃତ୍ୱ ଦେଇପାରି ନାହାନ୍ତି ।

ଭାରତରେ କମ୍ୟୁନିଷ୍ଟ ଆନ୍ଦୋଳନରେ ବହୁ ଭୁଲ ଭ୍ରାନ୍ତି ଥିବାସତ୍ତ୍ୱେ, ବହୁ ସୁବିଧାବାଦ ଓ ବିଶ୍ୱାସ ଘାତକତା ଥିବା ସତ୍ତ୍ୱେ ଏହି ଆନ୍ଦୋଳନ ବର୍ତ୍ତମାନ ପ୍ରକ୍ରିୟାରେ ଗତି କରୁଛି । କ୍ରମଶଃ ସଠିକ୍ ତତ୍ତ୍ୱ ଦିଗରେ ଏହା ଉର୍ଦ୍ଧ୍ୱକୁ ଅଗ୍ରସର ହେଉଛି । ଲକ୍ଷ୍ୟ କରାଯାଏ ଯେ କିଛି କମ୍ୟୁନିଷ୍ଟ ବ୍ୟକ୍ତି ଓ ଦୁଇଟି କମ୍ୟୁନିଷ୍ଟ ସଂଗଠନ [ CRC, CPI, (M-L)RCPI ] ଭାରତର ପ୍ରଧାନ ଶତ୍ରୁ ଯେ ସାମାଜ୍ୟବାଦ ଏହା ସଠିକ୍ ଭାବେ ସେମାନେ ଚିହ୍ନିପାରିଛନ୍ତି । ପୁନଶ୍ଚ, ସାମ୍ରାଜ୍ୟବାଦବିରୋଧୀ ଆନ୍ଦୋଳନ ଯେ ଭାରତର ବିଭିନ୍ନ ଜାତିର ଜାତୀୟ ମୁକ୍ତି ଆନ୍ଦୋଳନ ସହିତ ଛନ୍ଦା ଏକଥା ମଧ୍ୟ ସେମାନେ ସଠିକ୍ ଭାବେ ଚିହ୍ନି ପାରିଛନ୍ତି । ତେଣୁ ଏମାନେ ଭାରତରେ ବର୍ତ୍ତମାନ ଚାଲୁଥିବା ପ୍ରତ୍ୟେକ ଜାତୀୟ ଆନ୍ଦୋଳନର ଦୁର୍ବଳତାକୁ ପ୍ରକାଶ କରୁଥିବା ସତ୍ତ୍ୱେ ଏ ସମସ୍ତ ଆନ୍ଦୋଳନକୁ ସମର୍ଥନ କରୁଛନ୍ତି । ଏହି ଆନ୍ଦୋଳନର ନେତୃତ୍ୱ ନେବା ସକାଶେ ଏମାନେ ମାନସିକ ଦିଗରେ ପ୍ରସ୍ତୁତ ଥିଲେ ମଧ୍ୟ ନିଜର ସ୍ୱଳ୍ପ ଶକ୍ତିଯୋଗୁ ନେତୃତ୍ୱ ନେବାପାଇଁ ସକ୍ଷମ ହୋଇ ପାରି ନାହାନ୍ତି ।

ପୂର୍ବରୁ ବର୍ଣ୍ଣନା କରାଯାଇଛି ଯେ, "ଭାରତ ଏକ ଆଧୁନିକ ଜାତି ନୁହେଁ (କାରଣ ଗୋଟିଏ ଆଧୁନିକ ଜାତି ହେବା ପାଇଁ ଯେଉଁ ୪ଟି ଉପାଦାନ ଦରକାର ତାହା ଏହାର ନାହିଁ । ) ଯଦି କେହି କହୁଥାଏ ଭାରତ ଏକ ଜାତି ସେ ହୁଏତ ଅଜ୍ଞ ହୋଇଥିବ ଅଥବା ଚକ୍ରାନ୍ତକାରୀ ସାମ୍ରାଜ୍ୟବାଦର ଦଲାଲ ହୋଇଥିବ ।" ଏହି ଉକ୍ତିର ତାତ୍ପର୍ଯ୍ୟ ଆପଣମାନେ ଏବେ ବୁଝିପାରୁଥିବେ । ଭାରତ କହିଲେ ବର୍ତ୍ତମାନ ବୁଝାଯାଏ ଯେ ସାମ୍ରାଜ୍ୟବାଦର ଦଲାଲ ସର୍ବଭାରତୀୟ-ଶାସକ-ଶ୍ରେଣୀ । ଏହି ଶ୍ରେଣୀ ନିଜର ପେଟ ବଞ୍ଚାଇବା ପାଇଁ ଭାରତର ସବୁ ଜାତିର ଜନଗଣଙ୍କୁ ଏକ ଭାରତୀୟ-ଶାସନ-ଯନ୍ତ୍ରରେ ଜବରଦସ୍ତ ବାନ୍ଧିରଖି ଏମାନଙ୍କର ଝାଳବୁହା ସଂପତ୍ତିକୁ ସାମ୍ରାଜ୍ୟବାଦୀ ଶକ୍ତି ଆଗରେ ସମର୍ପଣ କରନ୍ତି । ଦେଶ ଓ ଜାତିର ସ୍ୱାର୍ଥକୁ ଓ ସମସ୍ତ ଇଜ୍ଜତକୁ ସାମ୍ରାଜ୍ୟବାଦୀ ଶକ୍ତି ପାଖରେ ବନ୍ଧା ପକାନ୍ତି । ଏହିମାନେ ହିଁ "ଅଖଣ୍ଡ ଭାରତ", "ଜାତୀୟ ସଂହତି"ର ଧୂଆଁ ବାଣ ମାରନ୍ତି । କିନ୍ତୁ ବାସ୍ତବରେ ଏମାନେ ବେଇମାନ୍, ଦେଶ ଦ୍ରୋହୀ ଓ ଜାତିଦ୍ରୋହୀ । ଭାରତର ପ୍ରତ୍ୟେକ ଜାତିର ଅର୍ଥନୈତିକ, ରାଜନୈତିକ ତଥା ସାମାଜିକ ଓ ସାଂସ୍କୃତିକ ବିକାଶ ପଥରେ ଏହି

ଶ୍ରେଣୀ ହେଉଛ୍ତି ଦୃଢବନ୍ଧକ । ଭାରତର ପ୍ରତ୍ୟେକ ଜାତି ( ସେ ଓଡ଼ିଆ ହେଉ, ବଙ୍ଗାଳୀ ହେଉ, ତେଲଗୁ ହେଉ ବା ପଞ୍ଜାବୀ ହେଉ ) ଯଦି ସାମ୍ରାଜ୍ୟବାଦ-ବିରୋଧୀ ଜାତୀୟ-ମୁକ୍ତି-ଆନ୍ଦୋଳନରେ ଝାସଦେଇ ଭାରତୀୟ ୟୁନିୟନରୁ ଅଲଗା ହୋଇ ସ୍ୱତନ୍ତ୍ର ସ୍ୱାଧୀନ ରାଜ୍ୟ ଗଠନ କରନ୍ତି ତେବେ ସାମ୍ରାଜ୍ୟବାଦର ଶୋଷଣ ଲୋପହେବା ସଙ୍ଗେ ସଙ୍ଗେ ଏହାର ଦଲାଲ ସର୍ବଭାରତୀୟ-ଶାସକ-ଶ୍ରେଣୀର ଶୋଷଣ ମଧ୍ଯ ଲୋପ ହେବ । ତେଣୁ ଯେତେବେଳେ କୌଣସି ଜାତି ( ଆସାମୀ ହେଉ, ନାଗାଲାଣ୍ଡ ହେଉ, ମିଜୋରାମ ହେଉ, ଗୁର୍ଖାଲାଣ୍ଡ ହେଉ କିମ୍ବା ପଞ୍ଜାବୀ ହେଉ ) ଭାରତୀୟ ୟୁନିୟନରୁ ଅଲଗା ହୋଇଯିବା ପାଇଁ ଚାହେଁ ତେବେ ସାମ୍ରାଜ୍ୟବାଦୀ ଶକ୍ତି ଏବଂ ଏହାର ଦଲାଲ ସର୍ବଭାରତୀୟ-ଶାସକ-ଶ୍ରେଣୀ ଭୀଷଣ ଭାବେ ଭୀତତ୍ରସ୍ତ ହୁଅନ୍ତି । "ଅଖଣ୍ଡ ଭାରତ", "ଜାତୀୟ ସଂହତି"ର କଣ୍ଠଫଟା ଚିତ୍କାର ଦିଅନ୍ତି । ଜାତୀୟ ମୁକ୍ତି ଆନ୍ଦୋଳନକାରୀମାନଙ୍କୁ ଓଲଟା ଦେଶଦ୍ରୋହୀ, ଜାତିଦ୍ରୋହୀ, ବିଚ୍ଛିନ୍ନତାବାଦୀ, ଆତଙ୍କବାଦୀ ଓ ସାମ୍ରାଜ୍ୟବାଦର ଦଲାଲ ଇତ୍ୟାଦି ଆଖ୍ୟା ଦିଅନ୍ତି । ଏମାନେ ସାମ୍ରାଜ୍ୟବାଦୀ ଶକ୍ତିଠାରୁ ସମସ୍ତ ସାମରିକ ସାହାଯ୍ୟ ନେଇ ଜାତୀୟ ମୁକ୍ତି ଆନ୍ଦୋଳନକାରୀ ମାନଙ୍କ ଉପରେ ବର୍ବରୋଚିତ ନୃଶଂସ ଆକ୍ରମଣ ଚଳାନ୍ତି ।

ଆପଣମାନେ ବର୍ତ୍ତମାନ ବୁଝିପାରୁଥିବେ ଯେ ଯେତେବେଳେ କଥା ଉଠିଲା ଯେ "ଭାରତର ସ୍ୱାର୍ଥ ପାଇଁ ବାଲିଆପାଲର ଜନଗଣଙ୍କୁ ତଥା ଓଡ଼ିଶାବାସୀଙ୍କୁ ତ୍ୟାଗ କରିବାକୁ ପଡ଼ିବ ସେତେବେଳେ "କାହିଁକି ?" ବୋଲି କ'ଣ ପାଇଁ ପ୍ରଶ୍ନ କରାଯାଇ ଥିଲା । ଏହି "କାହିଁକି ?" ପ୍ରଶ୍ନକୁ ବ୍ୟାଖ୍ୟା କରିବା ପାଇଁ କାହିଁକି ଏତେ ଗୁଡ଼ିଏ ଇତିହାସ ଭିତରକୁ ଯିବାକୁ ହେଲା ।

ଏଠାରେ "ଭାରତର ସ୍ୱାର୍ଥ" ମାନେ ଭାରତର ଅଗଣିତ ମେହନତୀ ଜନଗଣର ସ୍ୱାର୍ଥ ନୁହେଁ କି ଭାରତର ବିଭିନ୍ନ ପଡୋଶୀ ଜାତିର ଜନଗଣର ସ୍ୱାର୍ଥ ନୁହେଁ । ଏଠାରେ "ଭାରତର ସ୍ୱାର୍ଥ"ର ପ୍ରକୃତ ଅର୍ଥ ହେଉଛି ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ସ୍ୱାର୍ଥ ଓ ସେମାନଙ୍କର ଦଲାଲ ସର୍ବଭାରତୀୟ-ଶାସକ-ଶ୍ରେଣୀର ସ୍ୱାର୍ଥ । ତେବେ ଏହି ଋରପୋକ, ମଶା ଭଳି ପରାଗପୁଷ୍ଟ ଜୀବମାନଙ୍କ ପାଇଁ ଅର୍ଥାତ ଭାରତୀୟ ମେହନତୀ ଜନଗଣଙ୍କର ଶତ୍ରୁପାଇଁ ବାଲିଆପାଲର ଜନଗଣ ତଥା ଓଡ଼ିଶାବାସୀ କାହିଁକି ତ୍ୟାଗ କରିବେ ? ଏମାନେ କ'ଣ ବୋକା ?

## ଓଡ଼ିଶାର ଜାତୀୟ ମୁକ୍ତି ଆନ୍ଦୋଳନ ଅସମାପ୍ତ

ଭାରତରେ ଭିନ୍ନ ଜାତିର ମୁକ୍ତି ଆନ୍ଦୋଳନ ଭଳି ଓଡ଼ିଶାର ଜାତୀୟ ମୁକ୍ତି ଆନ୍ଦୋଳନ ଗତି କରୁଛି । ବ୍ରିଟିଶମାନେ ଭାରତକୁ ଆସିବା ପୂର୍ବରୁ ଓଡ଼ିଶାର

ରାଜାମାନେ ଓଡ଼ିଶାର ସ୍ୱାଧୀନତାକୁ ବଜାୟ ରଖିବା ପାଇଁ ପଡ଼ୋଶୀ ରାଜ୍ୟର ରାଜା ମାନଙ୍କ ସହିତ ଘନ ଘନ ସଂଘର୍ଷରେ ରତ ଥିଲେ । କେତେବେଳେ ଓଡ଼ିଶା ତାର ସ୍ୱାଧୀନତା ହରାଇଛି ତ ଆଉ କେତେବେଳେ ଓଡ଼ିଶା ତା'ର ସ୍ୱାଧୀନତା ପୁନଶ୍ଚ ହାସଲ କରିଛି । ଓଡ଼ିଶାର ଜନଗଣ କେତେ ସ୍ୱାଧୀନ ପ୍ରେମୀ ଅଶୋକଙ୍କ ସମୟରେ କଳିଙ୍ଗ ଯୁଦ୍ଧ ତା'ର ପ୍ରମାଣ । ପୁନଶ୍ଚ, ଭାରତରେ ଯେତେବେଳେ ବ୍ରିଟିଶ ତା'ର ଆଧିପତ୍ୟ ବିସ୍ତାର କରିବାକୁ ଲାଗିଲା, ଭାରତର ବିଭିନ୍ନ ରାଜ୍ୟକୁ ଜୟ କରିବାକୁ ଲାଗିଲା ତତ୍ପରେ ବ୍ରିଟିଶ ଓଡ଼ିଶା ଉପରେ ଆକ୍ରମଣ ଚଳାଇଲା । ଏହି ସମୟରେ ଓଡ଼ିଶାର ଜନଗଣ ବିଶେଷ କରି ଏହାର ପାଇକ ସଂପ୍ରଦାୟର ଲୋକମାନେ ତୀବ୍ର ବିରୋଧ କଲେ । ବ୍ରିଟିଶ୍ ବିରୁଦ୍ଧରେ ପାଇକ ବିଦ୍ରୋହର ଇତିହାସ ପୁନଶ୍ଚ, ଓଡ଼ିଶା ଜନଗଣଙ୍କର ଦେଶପ୍ରେମର ପରିଚୟ ଦିଏ ।

ବ୍ରିଟିଶ ଶାସନରେ ଓଡ଼ିଶା ଖଣ୍ଡ ବିଖଣ୍ଡିତ ହୋଇ ବ୍ରିଟିଶର ବିଭିନ୍ନ ଶାସନାଧୀନ ଅଞ୍ଚଳରେ ବିଭକ୍ତ ହୋଇ ରହିଲା । ବ୍ରିଟିଶ୍ ପୃଷ୍ଠପୋଷକତାରେ ଯେତେବେଳେ ବିଭିନ୍ନ ଅଂଚଳରେ ପୁଂଜିବାଦର ଉଦୟ ହେଲା ଓ ଭାରତର ବିଭିନ୍ନ ପ୍ରାନ୍ତରରେ ଶ୍ରେଷ୍ଠ ବଡ ବଜାରମାନ ଗଢି ଉଠିଲା ସେତେବେଳେ ଭାରତର ବିଭିନ୍ନ ପ୍ରାନ୍ତରରେ ବିଭିନ୍ନ ଜାତିର ଜାତୀୟ-ଚେତନା ଦେଖାଦେଲା । ଫଳରେ ଜାତୀୟ ଆନ୍ଦୋଳନ ତେଜି ଉଠିଲା । ଓଡ଼ିଶା ସେଥିରୁ ବାଦ ଗଲା ନାହିଁ ।

ଓଡ଼ିଶାରେ ପ୍ରଥମେ ଭାଷା ଉପରେ ଆନ୍ଦୋଳନ ହେଲା । ଓଡ଼ିଆକୁ ଏକ ସ୍ୱତନ୍ତ୍ର ଭାଷା ଭାବେ ଭାରତ ସରକାର ଘୋଷଣା କରିବା ପାଇଁ ଓଡ଼ିଶାର କେତେକ ମଧ୍ୟବିତ୍ତ-ଶ୍ରେଣୀ ବୁଦ୍ଧିଜୀବୀ ଉଦ୍ୟମ କଲେ । "ଓଡ଼ିଆ ଏକଟି ଭାଷା ନଏ"— ଏଭଳି ପ୍ରତିକ୍ରିୟାଶୀଳ ମନ୍ତବ୍ୟ ଭାରତରେ ଏକ ସୁନାମଧନ୍ୟ ବ୍ୟକ୍ତି କରିଥିଲେ । ଓଡ଼ିଆ ଭାଷାକୁ ଏକ ସ୍ୱତନ୍ତ୍ର ଭାଷା ବୋଲି ଗ୍ରହଣ କରିବା ପାଇଁ ବହୁ ସଂଗ୍ରାମ ଚାଲିଲା ଓ ଶେଷରେ ଓଡ଼ିଆ ଭାଷାକୁ ଏକ ସ୍ୱତନ୍ତ୍ର ଭାଷା ବୋଲି ସ୍ୱୀକାର କରାଗଲା ।

ଓଡ଼ିଆ ଭାଷାକୁ ଯଦିଓ ସ୍ୱୀକାର କରାଗଲା ତଥାପି ଓଡ଼ିଆ ଭାଷାକୁ ସରକାରୀ ଭାଷା ଭାବେ ଘୋଷଣା କରିବା ତଥା ଓଡ଼ିଆ ଭାଷାକୁ ସରକାରୀ ଭାଷା ଭାବେ ବ୍ୟବହାର କରିବା ପାଇଁ ମଧ୍ୟ ଓଡ଼ିଶାର ମଧ୍ୟବିତ୍ତ-ବୁଦ୍ଧିଜୀବୀମାନଙ୍କ ଠାରୁ ବହୁ ଆନ୍ଦୋଳନ ପ୍ରକାଶ ପାଇଲା ଓ ଏବେ ମଧ୍ୟ ଚାଲିଛି । ଓଡ଼ିଶାରେ ଇଂରାଜୀ ଭାଷା, ହିନ୍ଦୀଭାଷା ଓ ସଂସ୍କୃତ ଭାଷା ପାଇଁ ଯେଉଁ ପ୍ରଚାର ଓ ପ୍ରେରଣା ସରକାରୀ ଦଳ ତରଫରୁ ତଥା ଭାରତ ସରକାରଙ୍କ ଉଦ୍ୟମ ଜରିଆରେ ବିଭିନ୍ନ ଉପାୟରେ ଚାଲିଛି ଓଡ଼ିଆ ଭାଷାର ବିକାଶ ପାଇଁ ଏମାନଙ୍କ ତରଫରୁ କୌଣସି ଆନ୍ତରିକତା ପ୍ରକାଶ ପାଇପାରୁ ନାହିଁ । ଆମ ଓଡ଼ିଶାର ମଧ୍ୟବିତ୍ତ-ବୁଦ୍ଧିଜୀବୀମାନେ ( ଯେଉଁମାନେ କି ଉପନିବେଶିକ ସଂସ୍କୃତିକୁ

ଏବେ ବି ମୁକ୍ତ ନୁହଁନ୍ତି ) ଏହି ଅଣ-ଓଡ଼ିଆ ସଂସ୍କୃତିରେ ମଜଗୁଲ । ସେମାନଙ୍କର ପିଲାମାନେ ଯଦି ଇଂରାଜୀ କିମ୍ବା ହିନ୍ଦି-ମାଧ୍ୟମ ବିଦ୍ୟାଳୟ ଓ ମହାବିଦ୍ୟାଳୟ ମାନଙ୍କରେ ପଢନ୍ତି ଓ ସେମାନଙ୍କୁ ଡାକ୍ତ. ମାମିର ମଧୁର ଡାକରେ ଆପ୍ୟାୟିତ କରନ୍ତି ସେମାନେ ଖାଲି ଏଥିରେ ଗର୍ବ କରନ୍ତି ନାହିଁ, ବରଂ ଆତ୍ମହରା ହୁଅନ୍ତି, ଏମାନେ ପ୍ରତ୍ୟକ୍ଷରେ କିମ୍ବା ପରୋକ୍ଷରେ ଓଡ଼ିଆ-ବିରୋଧୀ ଯନ୍ତ୍ରରେ ଆହୂତି ଦିଅନ୍ତି ।

ପୁନଶ୍ଚ, ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହେବାଲାଗି ଓଡ଼ିଶାର ବହୁ ଅଗ୍ରଣୀ ବୁଦ୍ଧିଜୀବୀମାନେ ସଂଗ୍ରାମ ଚଳାଇଲେ । ବହୁ ବାଧାବିଘ୍ନ ଦେଇ ଗତିକରି ଶେଷରେ ଯଦିଓ ସେମାନେ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାପାଇଁ ସକ୍ଷମ ହେଲେ, ତଥାପି ଓଡ଼ିଶାର ବହୁ ଅଞ୍ଚଳ ପଶ୍ଚିମବଙ୍ଗ, ବିହାର ଓ ଆନ୍ଧ୍ରପ୍ରଦେଶରେ ରହିଗଲା । ଓଡ଼ିଶା ତା'ର ନ୍ୟାଯ୍ୟ ଅଞ୍ଚଳ ଏପର୍ଯ୍ୟନ୍ତ ବି ହରାଇ ବସିଅଛି ।

ଓଡ଼ିଶାର ଏ ସମସ୍ତ ବିପର୍ଯ୍ୟୟର କାରଣ ଓଡ଼ିଶା ଜାତୀୟ ଆନ୍ଦୋଳନରେ ନେତୃତ୍ୱ ନେଇଥିବା ମଧ୍ୟବିତ୍ତ ବୁଦ୍ଧିଜୀବୀମାନଙ୍କର ସଂକୀର୍ଣ୍ଣ ଦୃଷ୍ଟିକୋଣ ଯୋଗୁଁ । ଏମାନେ ବୁଝିବାକୁ ଅକ୍ଷମ ଥିଲେ ଯେ ଜାତୀୟ ଆନ୍ଦୋଳନର ସମାପ୍ତି ହୁଏନା ଏକ ଜାତିର ଭାଷା ଅନୁଯାୟୀ ଏକ ରାଜ୍ୟ ଗଠିତ ହେଲେ । ଏମାନେ ବୁଝିବାକୁ ଅକ୍ଷମ ଥିଲେ ଯେ ଜାତୀୟ ଆନ୍ଦୋଳନର ପରିସମାପ୍ତି ହୁଏ ସାମ୍ରାଜ୍ୟବାଦ-ବିରୋଧୀ ଜାତୀୟ ମୁକ୍ତି ଆନ୍ଦୋଳନର ପରିସମାପ୍ତିରେ । ଅର୍ଥାତ ଏକ ଜାତିମୁକ୍ତ ହୁଏ ଯେତେବେଳେ ଏହା ସାମ୍ରାଜ୍ୟବାଦର ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ ଶୋଷଣ ଓ ଆଧିପତ୍ୟରୁ ମୁକ୍ତିଲାଭ କରେ । ଯଦିଓ ଜାତୀୟ ଆନ୍ଦୋଳନ ପାଇଁ ଏମାନଙ୍କର ତ୍ୟାଗ ଓ ଅବଦାନ ଅସ୍ମରଣୀୟ ତଥାପି ଏମାନଙ୍କର ଦୂର ଦୃଷ୍ଟି-କୋଣର ଅଭାବ ଯୋଗୁଁ ଏମାନେ ସାମ୍ରାଜ୍ୟବାଦର ଚାଲି ଓ ଦ୍ୱାଚଖାକୁ ବୁଝିବାକୁ ଅକ୍ଷମ ହେଲେ । ସାମ୍ରାଜ୍ୟବାଦୀ ଶକ୍ତି ସ୍ୱାଧୀନତା ନାମରେ ଭାରତକୁ ତଥା ତା'ର ବିଭିନ୍ନ ଜାତିର ଜାତୀୟ ରାଜ୍ୟକୁ ନବଉପନିବେଶରେ ପରିଣତ କରି ଯେ ଚାଲିଗଲେ ଏକଥା ସେମାନେ ବୁଝିପାରିଲେ ନାହିଁ । ଏକ ଶତବର୍ଷ ରକ୍ତର ସୁଅ ବୁହାଇ ଭାରତକୁ ପରାଧୀନ କରି ଆଉ ଏକ ଶତବର୍ଷ ରକ୍ତର ସ୍ରୁତରେ ଭାରତ ଜନଗଣଙ୍କୁ ଜର୍ଜରିତ କରି କି ଭଳି ଗାନ୍ଧିଜୀଙ୍କର ଅହିଂସା ଓ ସତ୍ୟାଗ୍ରହରେ ସେମାନେ ଗୌତମ ବୁଦ୍ଧ ସାଜି ନିଜ ଦେଶକୁ ଚାଲିଗଲେ ଏହି ସାମ୍ରାଜ୍ୟବାଦର ଚକ୍ରାନ୍ତକୁ ବୁଝିବାପାଇଁ ସେମାନେ ଅକ୍ଷମ ଥିଲେ । ଫଳରେ ବ୍ରିଟିଶ ସାମ୍ରାଜ୍ୟବାଦ ନିଜ ହାତରେ ଗଢିଥିବା ସବଂଭାରତୀୟ ଶାସକ ଶ୍ରେଣୀ ଯେ କି ସାମ୍ରାଜ୍ୟବାଦର ଶୋଷଣ ଓ ଅତ୍ୟାଚାରର ଯନ୍ତ୍ର ତାହାକୁ ଅକ୍ଷୁର୍ଣ୍ଣ ରଖି ତାଙ୍କ ହାତରେ ଶାସନର ଭାର ଅର୍ପଣ କରି ନିଶ୍ଚିନ୍ତରେ ନିଜ ଦେଶକୁ ଚାଲିଗଲେ । ଏ ଚାଲି ଆମ ଓଡ଼ିଶାର ମଧ୍ୟବିତ୍ତ ବୁଦ୍ଧିଜୀବୀ ଶ୍ରେଣୀ

ବୁଝିବାକୁ ଅକ୍ଷମ ହେଲେ ଓ ଏବେ ମଧ୍ୟ ଅକ୍ଷମ ଅଛନ୍ତି । ଫଳରେ ଭାରତ ତଥା ଓଡ଼ିଶା ଭଳି ନବଉପନିବେଶ ମାନଙ୍କରେ ସାମ୍ରାଜ୍ୟବାଦର ଅର୍ଥନୈତିକ, ରାଜନୈତିକ, ଓ ସାଂସ୍କୃତିକ ଶୋଷଣ ଖାଲି ଅକ୍ଷୁର୍ଣ୍ଣ ରହିଲା ନାହିଁ, ବରଂ ଏହା ଦିନକୁ ଦିନ ପ୍ରବଳ ହେଉଛି ।

ବ୍ରିଟିଶ ସାମ୍ରାଜ୍ୟବାଦର ଦାଲାଲ ସର୍ବଭାରତୀୟ ବେପାରୀ ଦଳ ବିଶେଷ କରି ମାରୁଆଡ଼ି ସଂପ୍ରଦାୟ ଓଡ଼ିଶାରେ ନେହୁଭଳି ଭାବେ ଅପରିବର୍ତ୍ତିତ ରହିଲେ । ତଥାକଥିତ ସ୍ୱାଧୀନତା ପୂର୍ବରୁ ଓଡ଼ିଶାର ନିରୀହ ଜନସାଧାରଣଙ୍କୁ ଏମାନେ ଯେଉଁ ଭଳି ଭାବେ ଶୋଷଣ କରୁଥିଲେ (ଯାହାକି ମହାତ୍ମା ଗାନ୍ଧୀଙ୍କୁ ଏକଥା ସ୍ୱୀକାର କରିବାକୁ ପଡ଼ିଥିଲା ।) ସ୍ୱାଧୀନତା ପରେ ଓ ଏବେ ବି ଏମାନେ ଆହୁରି ବହୁଗୁଣରେ ଓଡ଼ିଶାବାସୀଙ୍କୁ ଶୋଷଣ କରୁଛନ୍ତି । ଦରଦାମରେ ଏକଚାଟିଆ ନୀତି ପ୍ରୟୋଗ ଦ୍ୱାରା ଏମାନେ ଓଡ଼ିଶା ବାହାରେ ସାମ୍ରାଜ୍ୟବାଦୀମାନଙ୍କର କଳ କାରଖାନାରେ ତିଆରି ଜିନିଷକୁ ବହୁ ଚଢ଼ାଦରରେ ବିକ୍ରୟ କରନ୍ତି ଓ ଓଡ଼ିଶାର କୃଷକ ଶ୍ରେଣୀ ଯେଉଁ କୃଷିଜାତ ଦ୍ରବ୍ୟ ତିଆରି କରେ ତାହାକୁ ଏବଂ ଓଡ଼ିଶାର ସରଳ ଆଦିବାସୀ ଜନଗଣଙ୍କର ଜଙ୍ଗଲ ଜାତ ଦ୍ରବ୍ୟକୁ ବହୁ କମ ଦରରେ କିଣି ବାହାରକୁ ବହୁ ଚଢ଼ାଦରରେ ପ୍ରେରଣ କରନ୍ତି । ଏମାନଙ୍କର ଏହି ଏକଚାଟିଆ କ୍ରୟ-ବିକ୍ରୟ ଓ ଏକଚାଟିଆ ଦରଦାମ ନିୟନ୍ତ୍ରଣ ଦ୍ୱାରା ସମଗ୍ର ଓଡ଼ିଶାର ଚାଷି, ମୂଲିଆ ଓ ଆଦିବାସୀ ଜନଗଣଙ୍କୁ ଏମାନେ ନିର୍ମମ ଭାବେ ଶୋଷଣ କରନ୍ତି ।

ସ୍ୱାଧୀନତା ପରେ ପରେ ଓଡ଼ିଶାରେ ଯେଉଁ ଶିଳ୍ପକରଣ ପ୍ରକ୍ରିୟା ଚାଲିଛି । ଏହା ମଧ୍ୟ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଇଙ୍ଗିତରେ ଓ ସେମାନଙ୍କର ଦଲାଲ ସର୍ବ-ଭାରତୀୟ ପୁଂଜିପତିମାନଙ୍କ ମାର୍ଫତରେ ଚାଲିଛି । ଏହି ଦଲାଲ ପୁଂଜିପତିମାନେ ସୌଭାଗ୍ୟ ବଶତଃ ପ୍ରାୟ ଓଡ଼ିଆ ଜାତିର ନୁହଁନ୍ତି । ଏହି ସର୍ବଭାରତୀୟ-ଦଲାଲ-ପୁଂଜିପତିମାନେ ନିଜର ପେଟ ବଢ଼ାଇବ ପାଇଁ ଓ ସେମାନଙ୍କର ମାଲିକ ସାମ୍ରାଜ୍ୟ-ବାଦୀ ଶକ୍ତିମାନଙ୍କର ମୁନାଫା ବଢ଼ାଇବା ପାଇଁ ଓଡ଼ିଶାର ଶସ୍ତାଶ୍ରମ ଓ ଶସ୍ତା କଞ୍ଚା-ମାଲକୁ ଶୋଷଣ କରୁଛନ୍ତି । ତେଣୁ ଓଡ଼ିଶାରେ ଯେଉଁ ଶିଳ୍ପକରଣ ଚାଲିଛି ଯଦିଓ ବାହାରି ଦୃଷ୍ଟିରୁ ଏହା ଓଡ଼ିଶାକୁ ଆଶୀର୍ବାଦ ଭଳି ମନେହେଉଛି, କିନ୍ତୁ ବାସ୍ତବରେ ଏହି ପ୍ରକ୍ରିୟା ଓଡ଼ିଶାର ସଂପତ୍ତିକୁ ଏତେ ପରିମାଣରେ ଲୁଣ୍ଠନ କରୁଛି ଯେ କ୍ରମଶଃ ଏହା ଓଡ଼ିଶାକୁ ପ୍ରାକୃତିକ ସଂପଦହୀନ କରି ଘୋର-ଅନ୍ଧକାର ଭବିଷ୍ୟତରେ ଏକ ଦେବାଳିଆ ଅବସ୍ଥାରେ ପକାଇଦେବ । ଭବିଷ୍ୟତରେ ଏହା ଛାତ୍ର-ଯୁବକମାନଙ୍କୁ ଚୀରଦିନ ପାଇଁ ବେକାରୀ-ଅନ୍ଧକାରର ସାଗରକୁ ନିକ୍ଷେପ କରିବ ।

ଓଡ଼ିଶାର କୃଷି କ୍ଷେତ୍ରର ଅବସ୍ଥା ମଧ୍ୟ ତଦ୍ରୂପ । ଓଡ଼ିଶାରେ ଜଳସେଚନ ବ୍ୟବସ୍ଥା, ସାର-ଔଷଧ ବ୍ୟବସ୍ଥା, କୃଷି-ସରଞ୍ଜାମ ବ୍ୟବସ୍ଥା, ଚକବନ୍ଦୀ-ବ୍ୟବସ୍ଥା

ଇତ୍ୟାଦିରେ 'ସାମ୍ରାଜ୍ୟବାଦ' ଶକ୍ତିର ନିଯୁକ୍ତି ଓ ଏମାନଙ୍କର ପୁଂଜି ଲଗାଣ ଏତେ ମାତ୍ରାରେ ପ୍ରବଳ ଯେ କୃଷକର ଉତ୍ପାଦନ ବଢ଼ିଲେ ଏମାନେ ବି କୃଷି ପାଇଁ କଳକବଜାରେ, ସାର-ଔଷଧରେ, କୃଷି-ସରଞ୍ଜାମରେ ଏତେ ଖର୍ଚ୍ଚ କରନ୍ତି ଯେ ଓ ସେହି ତୁଳନାରେ କୃଷିଜାତ-ଦ୍ରବ୍ୟ ବିକ୍ରୟରେ ଏତେ କମ ପାଆନ୍ତି ଯେ ଚାଷୀକୁଳ ସେହିଁ ଦରିଦ୍ର ଅବସ୍ଥାକୁ ସେହି ଦରିଦ୍ର ଅବସ୍ଥାରେ ରହିଛନ୍ତି । ଯଦିଓ କେବଳ କେତେକ ମୁଷ୍ଟିମେୟ ପୁଂଜିବାଦୀ-କୃଷକମାନେ କିଛିଟା ସୁବିଧା ପାଉଛନ୍ତି ।

ଓଡ଼ିଶାର ଶାସନ ବିଭାଗରେ ଯେତେଦୂର ମନେହୁଏ ବହୁ ଗୁରୁତ୍ୱପୂର୍ଣ୍ଣ ଓ ନିର୍ଣ୍ଣୟକାରୀ ( Crucial and Decisive Position ) ସ୍ଥାନମାନଙ୍କରେ ଅଣଓଡ଼ିଆ ଉଚ୍ଚପଦସ୍ଥ କର୍ମଚାରୀମାନେ ଆସନ ମାଡ଼ି ବସିଛନ୍ତି । ଏମାନଙ୍କର ସାମ୍ରାଜ୍ୟବାଦ ଶକ୍ତି ସହିତ ସିଧାସଳଖ ଓ ଗୋପନ ସଂପର୍କ ଥାଏ ! ତଥାକଥିତ ସ୍ୱାଧୀନତା ପରେ ପରେ ଓଡ଼ିଶା ପ୍ରଦେଶରେ ଯେତେ ରାଜ୍ୟ ସରକାର ଆସିଛନ୍ତି ସେମାନେ ରାଜନୈତିକ ଭାବେ ଏତେ ଦୁର୍ବଳ ଯେ ସାମ୍ରାଜ୍ୟବାଦର ଦଲାଲ କେନ୍ଦ୍ର ସରକାର ତଥା ସେମାନଙ୍କର ଦଲାଲ ଓଡ଼ିଶାରେ ଥିବା ଏହି ଉଚ୍ଚପଦସ୍ଥ କର୍ମଚାରୀମାନଙ୍କ ହାତରେ କାଠ ପିତୁଳାଭାବେ ବ୍ୟବହାର ହୁଅନ୍ତି । ଓଡ଼ିଶା ରାଜ୍ୟ ସରକାରର ଏମ୍. ଏଲ. ଏ. ଠାରୁ ମୁଖ୍ୟମନ୍ତ୍ରୀ ପର୍ଯ୍ୟନ୍ତ ପ୍ରାପ୍ତ ସମୟରେ ନିଜ ନିଜ ପକେଟ ଭରିବାରେ ବ୍ୟସ୍ତ । ଓଡ଼ିଆ ଜାତିର ସ୍ୱାର୍ଥ ବଙ୍ଗୋପସାଗରରେ ଲୀନ ହେଲେ ସୁଦ୍ଧା ଏମାନେ ଟିକେମାତ୍ର ଚିନ୍ତିତ ନୁହଁନ୍ତି ।

ସଂକ୍ଷେପରେ କହିବାକୁ ଗଲେ ଓଡ଼ିଆ ଜାତି ସାମ୍ରାଜ୍ୟବାଦ ଶକ୍ତିଦ୍ୱାରା ଓ ଏମାନଙ୍କର ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀ ( ବିଶେଷତଃ ଅଣଓଡ଼ିଆ ସର୍ବଭାରତୀୟ ଦଲାଲ ବେପାରୀ, ଦଲାଲ ପୁଞ୍ଜିପତି ଓ ଦଲାଲ-ଅମଲା ନେତୃତ୍ୱ ) ଜରିଆରେ ଏପର୍ଯ୍ୟନ୍ତ ଅର୍ଥନୈତିକ ଭାବେ, ରାଜନୈତିକ ଭାବେ ଓ ସାଂସ୍କୃତିକ ଭାବେ ଶୋଷିତ ଓ ଲାଂଛିତ ହୋଇ ଆସୁଛି ।

ଓଡ଼ିଶା ପ୍ରତି ଏହି ଶୋଷଣ ଓ ଲାଞ୍ଛନା ବିରୁଦ୍ଧରେ ଓଡ଼ିଶାର ମେହନତୀ ଜନଗଣ, ଇଜ୍ଜତ ପ୍ରେମୀ, ଦେଶପ୍ରେମୀ ଜନଗଣ ବିଶେଷ କରି ଛାତ୍ର ସମାଜ ତଥାକଥିତ ସ୍ୱାଧୀନତା ପରେ ପରେ ବହୁବାର ପ୍ରତିକ୍ରିୟା ପ୍ରକାଶ କରି ଆସିଛନ୍ତି । ଷଷ୍ଠ ଦଶକରେ ସରାଇକେଲା ଖରସୁଆଁ ପାଇଁ ସଂଗ୍ରାମ ହେଉ, ୭ମ ଦଶକରେ ଉତ୍କଳ-କଲେଜ ଛାତ୍ରମାନଙ୍କର ମାରୁଆଡ଼ୀ ବିରୋଧୀ ଆନ୍ଦୋଳନ ହେଉ, ୮ମ ଦଶକରେ ପଶ୍ଚିମ ଓଡ଼ିଶା ଛାତ୍ର ଆନ୍ଦୋଳନ ହେଉ ବା ୯ମ ଦଶକରେ ଗୁର୍ଲ୍ଲିର ରକ୍ତାକ୍ତ ଘଟଣା ପାଇଁ ପୂର୍ବ ଓଡ଼ିଶାର ଛାତ୍ର ଆନ୍ଦୋଳନ ହେଉ ଏ ସମସ୍ତ ଆନ୍ଦୋଳନ ଜାତୀୟ ଅତ୍ୟାଚାର ଓ ଲାଞ୍ଛନା ବିରୁଦ୍ଧରେ ଜାତୀୟ ମୁକ୍ତି ଆନ୍ଦୋଳନର ପ୍ରତିଫଳନ ମାତ୍ର । ଜାତୀୟ

ମର୍ଯ୍ୟାଦାର ପ୍ରତିଫଳନ ମାତ୍ର । କିନ୍ତୁ ଦୁର୍ଭାଗ୍ୟ ବଶତଃ ସାମ୍ରାଜ୍ୟବାଦ ଶକ୍ତି ଓ ଏହାର ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀର କାଠପିତୁଳା ଏହି ଓଡ଼ିଶା ସରକାର ଏହି ସମସ୍ତ ଆନ୍ଦୋଳନକୁ ଅସମାପ୍ତ ଜାତୀୟ ମୁକ୍ତି ଆନ୍ଦୋଳନର ପୁନଃ ପ୍ରକାଶ ବୋଲି ସ୍ୱୀକାର ନ କରି ଏହାକୁ ସାଂପ୍ରଦାୟିକ ଦଂଗା ବୋଲି ଆଖ୍ୟାଦେଇ ଏ ସମସ୍ତ ଆନ୍ଦୋଳନକୁ ଦମନ କରି ଆସିଛି । ପୁନଶ୍ଚ, ବିରୋଧୀ ପାର୍ଟିମାନେ ବିଭିନ୍ନ ଆଳରେ ସେମାନଙ୍କର ଗ୍ରୁପ ଗୋଷ୍ଠୀକୁ ଏହି ସମସ୍ତ ଆନ୍ଦୋଳନରୁ ଓହରେଇ ନେଇଛନ୍ତି ।

ସାମ୍ରାଜ୍ୟବାଦର ଦଲାଲ ସର୍ବଭାରତୀୟ ଶାସକଶ୍ରେଣୀ ଓଡ଼ିଶାକୁ ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ କ୍ଷେତ୍ରରେ ଶୋଷଣ କରି କ୍ଷାନ୍ତ ହେଲା ନାହିଁ । ସେ ଦେଖିବାକୁ ପାଇଲା ଯେ ଯେତେବେଳେ ଓଡ଼ିଶାର ରାଜ୍ୟ ସରକାର ନିର୍ବୀର୍ଯ୍ୟ, ଓଡ଼ିଶାର ବୁଦ୍ଧିଜୀବୀ ଓ ବାମପନ୍ଥୀ ପାର୍ଟି ପ୍ରଙ୍କ୍ଷ୍ମନ ଓ ଓଡ଼ିଶାର ସରଳ ଜନଗଣ ସହଜରେ ପ୍ରତାରଣୀୟ ସେତେବେଳେ ଏମାନଙ୍କ ଉପରେ ବୋଝ ଉପରେ ନଳିତାବିଡ଼ା ଲଦିଲେ କିଛି ଯାଏ ଆସେନା ।

ପୂର୍ବରୁ କୁହାଯାଇଛି ଯେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପରେ ସାମ୍ରାଜ୍ୟବାଦୀ ଶକ୍ତିମାନେ ବିଭିନ୍ନ କାରଣରୁ ବିଶ୍ୱରେ ନବ-ଉପନିବେଶବାଦ ପ୍ରତିଷ୍ଠା କଲେ । ଅର୍ଥାତ ପ୍ରତ୍ୟେକ ପୂର୍ବ-ଉପନିବେଶିକ ଦେଶମାନଙ୍କରେ ବିଶେଷ କରି ତୃତୀୟ ବିଶ୍ୱ ( ଏସିଆ, ଆଫ୍ରିକା, ଲାଟିନ୍-ଆମେରିକା ) ଦେଶମାନଙ୍କରେ ଦଲାଲୀ ଶାସନ ଆରମ୍ଭ କଲେ । ଅର୍ଥାତ ଏହି ଦେଶମାନଙ୍କରେ ସମସ୍ତ ବଜାର ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ବଜାର ହୋଇ ରହିଲା । ମାତ୍ର ସମ୍ରାଜ୍ୟବାଦୀ ଶକ୍ତିମାନେ ସେହି ସମସ୍ତ ବଜାରକୁ ସେହି ଦେଶର ଦଲାଲ-ପୁଂଜିପତି ଶ୍ରେଣୀ ଦ୍ୱାରା ନିୟନ୍ତ୍ରଣ କଲେ ।

ଏହି ଦେଶମାନଙ୍କରେ ଦଲାଲ-ପୁଂଜିପତି ଶ୍ରେଣୀ ଏହି ଦଲାଲୀ ଯୋଗୁଁ ନିକେ ବି କିଛିଟା ମୁନାଫା ଉଠାନ୍ତି । ନିଜର ପ୍ରଭୁ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ଠାରେ ଟିକିଏ ଅଧିକ ମୁନାଫା ପାଇଁ କେତେ ବା ହାରି ଗୁହାରି ଏମାନେ କରିବେ ? ଏହି ମୁନାଫା ପାଇଁ ସେମାନେ ତ ଆଉ ସେମାନଙ୍କ ବିରୁଦ୍ଧରେ ସଂଗ୍ରାମ କରି ପାରିବେ ନାହିଁ । ତେଣୁ ଆଉ ଏକ ଉପାୟରେ ହିଁ ଏହି ମୁନାଫାକୁ ଅଧିକ କରିହେବ । ତାହା ହେଉଛି ଯେଉଁ ଦଲାଲ-ପୁଂଜିପତି ଶ୍ରେଣୀ ଯେତେ ବଡ ବଜାରର ଦଲାଲୀ (Agency) ସାମ୍ରାଜ୍ୟବାଦୀ ପ୍ରଭୁଠାରୁ ନେବ, ସେ ସେତେ ମୁନାଫା ଉଠାଇବ । ଏଥିପାଇଁ ଏହି ନବ-ଉପନିବେଶିକ ଦେଶମାନଙ୍କରେ ଥିବା ଦଲାଲ-ପୁଂଜିପତି ଶ୍ରେଣୀମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦିତା ଲାଗିଯାଏ ଯେ କିଏ କେତେ ବେଶୀ ବଜାରର ଦଲାଲୀ ନେବ । ଏହା କେବଳ ସମ୍ଭବ ଯଦି ଅନ୍ୟ ଏକ ନବ-ଉପନିବେଶ ଉପରେ ଆଧିପତ୍ୟ ବିସ୍ତାର

କରାଯାଏ । ଏସିଆ ମହାଦେଶରେ ଭାରତର ସର୍ବ-ଭାରତୀୟ-ଦଲାଲ-ପୁଂଜିପତି ଶ୍ରେଣୀ ଅନ୍ୟ ଦେଶର ଦଲାଲ-ପୁଂଜିପତି ଶ୍ରେଣୀଠାରୁ ଅଧିକ ବଳଶାଳୀ ଥିବାରୁ ଏହି ଶ୍ରେଣୀ ସେହି ସମସ୍ତ ଦେଶୀୟ ବଜାର ଉପରେ ସବୁବେଳେ ଲୋଲୁପ ଦୃଷ୍ଟି ରଖି ଆସି ଅଛି ଓ ଏହି ସବୁ ବଜାରରେ ଦଲାଲି କରିବାପାଇଁ ସମସ୍ତ ପ୍ରକାରର ପ୍ରଚେଷ୍ଟା ଚଳାଇ ଆସିଅଛି । ଯଦି ଆପୋଷ ମିଳାମିଶାରେ ପଡ଼ୋଶୀ ରାଜ୍ୟର ବଜାର ଉପରେ ନିଜର ଦଲାଲୀକୁ ଜାହିର କରାଯିବା ଅସମ୍ଭବ ହୁଏ ତେବେ ଦରକାର ପଡ଼ିଲେ ବଳ ପ୍ରୟୋଗ କରିବାକୁ ପଡ଼ିବ । ଏଥିପାଇଁ ସର୍ବଭାରତୀୟ ଶାସକ ଶ୍ରେଣୀ ସବୁବେଳେ ପ୍ରସ୍ତୁତ ହେଉଛି । ତେଣୁ ନିଜ ଦେଶର ସାମରିକ ଶକ୍ତି ବୃଦ୍ଧିପାଇଁ ସମସ୍ତ ଯୋଜନା କରୁଛି ।

ଏହି ସାମରିକ ଘାଟୀମାନ ସର୍ବଭାରତୀୟ ଶାସକ ଶ୍ରେଣୀ କରିବ ବା କେଉଁଠି ? ଏ ସମାରିକ ଘାଟୀମାନ ତ ଖାଲି ପଡ଼ୋଶୀ ରାଜ୍ୟପାଇଁ ଭଲ ନୁହେଁ ? ନିଜ ରାଜ୍ୟ ପାଇଁ ଭଲ ମଧ୍ୟ । କାରଣ କେତେବେଳେ କେମିତି ସାମରିକ ଘାଟୀମାନଙ୍କରେ ଦୁର୍ଘଟଣା ଘଟିଲେ ହଜାର ହଜାର ଲୋକମାନେ ନଷ୍ଟ ହେବେ । ଯେପରି କି ଭୋପାଳରେ ଘଟିଗଲା । କିମ୍ବା ଏହି ଘାଟୀ ଉପରେ ପଡ଼ୋଶୀ ରାଜ୍ୟ ପ୍ରତି-ଆକ୍ରମଣ କଲେ ଲକ୍ଷ ଲକ୍ଷ ଲୋକ ନଷ୍ଟହେବେ । ଯେପରିକି ହିରୋସିମା ଓ ନାଗାସାକିରେ ଘଟିଗଲା । ତେବେ ଏ ସମସ୍ତ ଘାଟୀ କେଉଁ ରାଜ୍ୟରେ କରାଯିବ ? ଯେଉଁ ରାଜ୍ୟ କି ଏ ସମସ୍ତ କ୍ଷୟକ୍ଷତିକୁ ସହଜରେ ମଥାପାତି ନେବ । ରାଜ୍ୟରେ ଜନଗଣ ସହଜରେ ପ୍ରତାରଣୀୟ । ଯେଉଁ ରାଜ୍ୟରେ ବୁଦ୍ଧିଜୀବୀ ପ୍ରଜ୍ଞାହୀନ ଓ ଯେଉଁ ରାଜ୍ୟରେ ଶାସକ ତଥା ବିରୋଧୀ ରାଜନୈତିକ ଦଳ ଜାତିଦ୍ରୋହୀ ଓ ଦଲାଲ ! ସେହି ରାଜ୍ୟ ଭାରତରେ ଓଡ଼ିଶା ହେଉଛି ପ୍ରଥମ । ତେଣୁ ଭାରତର ବିଭିନ୍ନ ରାଜ୍ୟରେ ଅଳ୍ପ ବହୁତରେ ସାମରିକ ଘାଟୀ ଥିବାବେଳେ ଓଡ଼ିଶାରେ ତାହା ସର୍ବାଧିକ ।

ବାଲେଶ୍ୱର ଜିଲ୍ଲାର ବାଲିଆପାଳ, ଚାନ୍ଦିପୁର ଓ ଆଳଗିରି, ମୟୁରଭଞ୍ଜ ଜିଲ୍ଲାର ରାସଗୋବିନ୍ଦପୁର [ମେଦିନୀପୁର ଜିଲ୍ଲାର କଲାଇକୁଣ୍ଡା (ପ.ବ)] କଟକ ଜିଲ୍ଲାର ଚାରବାଟିଆ, ପୁରୀ ଜିଲ୍ଲାର ଚିଲିକା, ଗଞ୍ଜାମ ଜିଲ୍ଲାର ଗୋପାଳପୁର, କୋରାପୁଟ ଜିଲ୍ଲାର ସୁନାବେଡ଼ା ଓ ବଲାଙ୍ଗିର ଜିଲ୍ଲାର ସଇଁତାଲା (ମଧ୍ୟ ପ୍ରଦେଶର ବାନ୍ଦ୍ରା ।) ଇତ୍ୟାଦି ହେଉଛି ଓଡ଼ିଶାରେ ସାମରିକ ଘାଟୀମାନ । ତେଣୁ ଓଡ଼ିଶାର ଚତୁଃପାର୍ଶ୍ୱ ଉତ୍ତରରୁ ଦକ୍ଷିଣ ଓ ପୂର୍ବରୁ ପଶ୍ଚିମ ସାମରିକ ଘାଟୀରେ ବେଷ୍ଟିତ । ତେଣୁ ସାମ୍ରାଜ୍ୟବାଦର ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀର ମୁନାଫା ବଢ଼ାଇବା ପାଇଁ ଓଡ଼ିଶା ଯେକୌଣସି ସମୟରେ ଶ୍ମଶାନରେ ପରିଣତ ହେବ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ସାମ୍ରାଜ୍ୟବାଦୀ ଶକ୍ତିର ସ୍ୱାର୍ଥପାଇଁ ଓ ତାହାର ଦଲାଲ ସର୍ବଭାରତୀୟ ଶାସକ

ଶ୍ରେଣୀର ସ୍ୱାର୍ଥପାଇଁ ଓଡ଼ିଆ ଜାତି ତା'ର ସୀମାକୁ ସଂକୁଚିତ କଲା, ତା'ର କେତେକ ରାଜ୍ୟ ହରାଇଲା । ତା'ର ଅର୍ଥନୀତିକୁ ଧ୍ୱସ୍ତବିଧ୍ୱସ୍ତ କରି କଙ୍କାଳ ସାର ହେଲା । ଆଜି ସେହି ଶୋଷକ ରକ୍ତମୁଖା ବ୍ୟାଘ୍ରମାନଙ୍କ ପାଇଁ ସେ ତା'ର ଜୀବନ ଓ ଭିଟାମାଟିକୁ ଶ୍ମଶାନରେ କାହିଁକି ବା ପରିଣତ ନ କରିବ ? ତେଣୁ ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟୀ ସାମ୍ରାଜ୍ୟବାଦୀ ଶକ୍ତି ଓ ତାହାର ଦଲାଲ ଭାରତ ସରକାରଙ୍କ ଓଡ଼ିଶା ପ୍ରତି ହେଉଛି ସର୍ବୋଚ୍ଚ ଆକ୍ରମଣ ।

ଓଡ଼ିଶାର ମେହନତୀ ଜନଗଣ, ଓଡ଼ିଶାର ନାରୀ ଜଗତ, ଓଡ଼ିଶାର ଛାତ୍ର, ଯୁବକ ଓ ବୁଦ୍ଧିଜୀବୀ କ'ଣ ଏହି ସର୍ବୋଚ୍ଚ ଆକ୍ରମଣକୁ ଏବେ ବି ସହିନେବେ ? କେବେ ନୁହେଁ । ଓଡ଼ିଶାର ଯେଉଁ ଜାତୀୟ ମୁକ୍ତି ଆନ୍ଦୋଳନ ଭିନ୍ନ ଭିନ୍ନ ଅବସ୍ଥାରେ ଭିନ୍ନ ଭିନ୍ନ ସମୟରେ ମଥା ଟେକି ଆସିଛି । ଯେଉଁ ମୁକ୍ତିର ପ୍ରଦୀପ ବିଭିନ୍ନ ସମୟରେ ଜଳି, ଲିଭି ଓ ଲିଭି ଜଳି ଆସୁଛି ଯେ ଆଜି ଶେଷଥର ପାଇଁ ଜଳି ଉଠିବ ଦାସତ୍ୱର ଅନ୍ଧକାରକୁ ଚିର ଦିନ ସକାଶେ ଜାଳିଦେବା ପାଇଁ । ସମଗ୍ର ଓଡ଼ିଶାର ଜାତି ପ୍ରେମୀ, ଦେଶ ପ୍ରେମୀ ଜନଗଣ ଶେଷଥର ପାଇଁ ଅଣ୍ଟା ଭିଡ଼ିବେ ସାମ୍ରାଜ୍ୟବାଦ-ବିରୋଧୀ ଓଡ଼ିଶା-ଜାତୀୟ ମୁକ୍ତି ଆନ୍ଦୋଳନକୁ ସମାପ୍ତ କରିବା ପାଇଁ । ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟୀ ସମଗ୍ର ଓଡ଼ିଶାକୁ ଆଜି ଜାଗ୍ରତ କରାଇଛି ଓ କ୍ରମଶଃ ଏକଜୁଟ କରାଉଛି ସେହି ମୁକ୍ତି ସଂଗ୍ରାମର ଲେଲିହାନ ଶିଖାରେ ଝାସ ଦେବାପାଇଁ ।

ସାମ୍ରାଜ୍ୟବାଦ ଶକ୍ତିମାନଙ୍କର ହାତରେ ଗଢ଼ା ଦଲାଲ-ସର୍ବଭାରତୀୟ-ଶାସକ ଶ୍ରେଣୀର ଯନ୍ତ୍ରା ଓ କବ୍‌ଜାରେ ଓଡ଼ିଶା ଯେତେ ଦିନ ପର୍ଯ୍ୟନ୍ତ ଅଟକି ରହିଥିବ ସେ ସାମ୍ରାଜ୍ୟବାଦୀ ଶକ୍ତିଦ୍ୱାରା ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ ଭାବେ ଶୋଷିତ ହେଉଥିବ । ଓଡ଼ିଶା କେବେ ହେଲେ ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ ଭାବେ ଆତ୍ମନିର୍ଭରଶୀଳ ହୋଇ ବିକାଶ ଲାଭ କରିପାରିବ ନାହିଁ । ତା'ର ସମସ୍ତ ବିକାଶ ପଥରେ ସର୍ବଭାରତୀୟ ଶାସକ ଶ୍ରେଣୀର କବ୍‌ଜା ପ୍ରତିବନ୍ଧକ ହୋଇ ଛିଡ଼ା ହେବ । ତେଣୁ ଓଡ଼ିଶା ତା'ର ନିଜର ମୁକ୍ତ ବିକାଶ ପାଇଁ, ତା'ର ଜନଗଣଙ୍କ ମଙ୍ଗଳ ପାଇଁ ସେହି ବ୍ୟାଘ୍ର କବ୍‌ଜାରୁ ମୁକ୍ତ ହେବା ଛଡ଼ା ଅନ୍ୟ ଗତି ନାହିଁ ।

ତେବେ ଏହି କବ୍‌ଜାରୁ ମୁକ୍ତ ହେବାକୁ ଗଲେ ସେହି ବ୍ୟାଘ୍ରମାନଙ୍କଦ୍ୱାରା ବିଛାଯାଇଥିବା ମାୟାଜାଲରୁ ପ୍ରଥମେ ମୁକ୍ତ ହେବା ଉଚିତ୍ ।

## ଭାରତ ଖଣ୍ଡ ବିଖଣ୍ଡ ହୋଇଗଲେ ସେ ତା'ର ସ୍ୱାଧୀନତା ହରାଇବ ?

ଭାରତର ଶାସକ ଶ୍ରେଣୀ ସବୁବେଳେ ପ୍ରଚାର ଚଳାଇ ଆସିଛି ଯେ ଭାରତରେ

ପୂର୍ବରୁ ରାଜା ମହାରାଜାମାନେ ପକ୍ଷରେ ମୂଳରେ ଥିବାରୁ ଓ ଭାରତ ସେହି ଦୃଷ୍ଟିରୁ ଖଣ୍ଡବିଖଣ୍ଡିତ ଥିବାରୁ ସେ ତା'ର ସ୍ୱାଧୀନତା ହରାଇଲା । ପୁଣି ଏବେ ଯଦି ଭାରତ ବିଭିନ୍ନ ରାଜ୍ୟରେ ବିଭକ୍ତ ହୋଇଯାଏ ପୁନଶ୍ଚ ସେ ତା'ର ସ୍ୱାଧୀନତା ହରାଇବ ।

ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ ଭାରତ ଏବେ ବି ସ୍ୱାଧୀନ ନୁହେଁ । ପରାଧୀନ ସାମ୍ରାଜ୍ୟବାଦ ଶକ୍ତି ଭାରତର ଜନଗଣ ଆଗରେ ଏକ ସ୍ୱାଧୀନତାର ଧୂମ୍ର ପରଦା ଟାଙ୍ଗି ଦେଇଛି । ତଥାପି ସେମାନଙ୍କର କଥା ଅନୁସାରେ ଧରାଯାଉ ଭାରତ ସ୍ୱାଧୀନ । ଭାରତ ଯଦି ଓଡ଼ିଶା, ବଙ୍ଗଳା, ଅନ୍ଧ୍ର, ପଞ୍ଜାବ ଆଦି ଜାତିସ୍ୱ ରାଜ୍ୟମାନଙ୍କରେ ବିଭକ୍ତ ହୋଇଯାଏ, ତେବେ ଏ ସମସ୍ତ ରାଜ୍ୟ କ'ଣ ସେମାନଙ୍କର କ୍ଷୁଦ୍ରତାକୁ ନେଇ ବିଦେଶୀ ଶକ୍ତି ପାଖରେ ପରାଧୀନ ହୋଇଯିବ ?

ପୃଥିବୀରେ ଏବେ ବି ବହୁ ରାଜ୍ୟ ଅଛି ଯାହାର ଲୋକସଂଖ୍ୟା ଓ କ୍ଷେତ୍ରଫଳ ଅନୁସାରେ ସେମାନେ ଓଡ଼ିଶାଠାରୁ ଶ୍ରେଷ୍ଠ । ଏପରିକି ବାଲେଶ୍ୱର ଜିଲ୍ଲାଠାରୁ ମଧ୍ୟ କମ୍ । ତେବେ ସେ ସମସ୍ତ ରାଜ୍ୟ କିଭଳି ସ୍ୱତନ୍ତ୍ର ସ୍ୱାଧୀନ ରାଜ୍ୟଭାବେ ଏ ପର୍ଯ୍ୟନ୍ତ ଛିଡ଼ା ହୋଇ ରହି ଆସିଛି ? ଠିକ୍ ସେହିପରି ପୃଥିବୀରେ ଅତୀତରେ ବହୁ ରାଜ୍ୟ ଥିଲା ଯେଉଁମାନଙ୍କର ଭୌଗଳିକ କ୍ଷେତ୍ରଫଳ ଓ ଲୋକସଂଖ୍ୟା ଅତ୍ୟଧିକ ଥିଲା । କିନ୍ତୁ ସେ ସମସ୍ତ ରାଜ୍ୟ ଅପେକ୍ଷାକୃତ ଖୁବ୍ ଶ୍ରେଷ୍ଠ ଦେଶ ଦ୍ୱାରା ପରାଜିତ ହୋଇ ସେମାନଙ୍କଠାରେ ଏମାନଙ୍କର ସ୍ୱାଧୀନତା ହରାଇଲା । ତେଣୁ କୌଣସି ଦେଶର ସ୍ୱାଧୀନତା କିମ୍ବା ପରାଧୀନତା ଲୋକସଂଖ୍ୟା କିମ୍ବା କ୍ଷେତ୍ରଫଳ ଉପରେ ନିର୍ଭର କରେନାହିଁ । ଦେଶର ସ୍ୱାଧୀନତା କିମ୍ବା ପରାଧୀନତା ନିର୍ଭର କରେ ସେ ଦେଶ କିମ୍ବା ଜାତିର ଆଭ୍ୟନ୍ତରୀଣ ସାମାଜିକ ବ୍ୟବସ୍ଥା । ତେଣୁ ଭାରତବର୍ଷ ଯଦି ବିଭିନ୍ନ ଜାତିସ୍ୱ ରାଜ୍ୟରେ ବିଭକ୍ତ ହୋଇଯାଏ ଏବଂ ସେହି ଜାତିସ୍ୱ ରାଜ୍ୟମାନଙ୍କର ଆଭ୍ୟନ୍ତରୀଣ ଅବସ୍ଥା ଅନୁକୂଳ ରହେ ତେବେ ଏହି ସମସ୍ତ ଜାତିସ୍ୱ ରାଜ୍ୟ ନିଜର ସ୍ୱାଧୀନତାକୁ ବଜାୟ ରଖିପାରିବେ ।

## ସୋଭିଏତ୍ ଦେଶ ସମାଜବାଦୀ ଦେଶ ?

ଆମ ସମସ୍ତଙ୍କ ମଧ୍ୟରେ ଧାରଣା ଖୁବ୍ ଦୃଢ଼ ଭାବରେ ଭର୍ତ୍ତି କରାଯାଇଛି ଯେ ସୋଭିଏତ୍ ଦେଶ ହେଉଛି ଏକ ସମାଜବାଦୀ ଦେଶ । ଏ ଦେଶ ଅନ୍ୟ ଦେଶର ବିକାଶରେ ସାହାଯ୍ୟ କରେ ଓ ଅନ୍ୟ ଦେଶକୁ ସ୍ୱାଧୀନ କରିବାରେ ସାହାଯ୍ୟ କରେ । ସେ ଦେଶ ଯଦି ଆମ ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟୀ ତିଆରି କରେ ନିଶ୍ଚୟ ଏହା ଆମଦେଶ ପାଇଁ ମଙ୍ଗଳ ଜନକ ହୋଇଥିବ ।

ପ୍ରଥମରେ ଆମକୁ ମନେରଖିବାକୁ ହେବ ଯେ କୌଣସି ବ୍ୟକ୍ତି, କୌଣସି ସଂଗଠନ, କୌଣସି ଦେଶର ସାମାଜିକ ବ୍ୟବସ୍ଥା ଅପରିବର୍ତ୍ତନୀୟ ନୁହେଁ । ଜଣେ ବ୍ୟକ୍ତି ଯଦି ସାଧୁ ଥାଏ ସେ ଭବିଷ୍ୟତରେ ଚୋର ଯେ ନ ହେବ ଏହାର ନିଶ୍ଚିତତା କୌଣସି ନାହିଁ । ଠିକ୍ ସେହିଭଳି ଏକ ସଂଗଠନ ଓ ଦେଶର ଅବସ୍ଥା ହୁଏ । ନିଶ୍ଚିତ ରୂପେ ସୋଭିଏତ୍ ଦେଶ ୧୯୧୭ ଅକ୍ଟୋବର ବିପ୍ଳବ ପରେ ପରେ ଏକ ସମାଜବାଦୀ ଦେଶ ଭିତରୁ ଗଢିଥିଲା । ଏହାର ନେତୃତ୍ୱ ନେଇଥିଲେ ସୋଭିଏତ କମ୍ୟୁନିଷ୍ଟ ପାର୍ଟିର ନେତା ଯୋସେଫ୍ ଷ୍ଟାଲିନ୍ । ଏହି ଷ୍ଟାଲିନ୍‌ଙ୍କ ସମୟରେ ସୋଭିଏତ୍ ଦେଶ ଅନ୍ୟାନ୍ୟ ଦେଶକୁ ସାହାଯ୍ୟ କରୁଥିଲା । କିନ୍ତୁ ଷ୍ଟାଲିନ୍‌ଙ୍କ ମୃତ୍ୟୁପରେ କ୍ରୁଚେଭ୍ ଯେତେବେଳେ ନେତୃତ୍ୱ ନେଲେ ଠିକ୍ ସେହି ସମୟରୁ ରୁଷର କମ୍ୟୁନିଷ୍ଟ ପାର୍ଟି ଏକ ପୁଞ୍ଜିବାଦୀ ପାର୍ଟିରେ ପରିଣତ ହେଲା । ତେଣୁ ସମାଜବାଦ ଆଡକୁ ଗତି କରୁଥିବା ରୁଷ ପୁନଶ୍ଚ ପୁଞ୍ଜିବାଦ ଆଡକୁ ମୁହଁ ଫେରାଇଲା । ଫଳରେ ସୋଭିଏତ ଦେଶ ପୁଞ୍ଜିବାଦରୁ କ୍ରମଶଃ ଏକ ସାମ୍ରାଜ୍ୟବାଦୀ ଦେଶରେ ପରିଣତ ହେଲା । ସେଥିପାଇଁ ସୋଭିଏତ ଦେଶ ବର୍ତ୍ତମାନ ଭାରତ ସମେତ ବିଭିନ୍ନ ଦେଶକୁ ସାହାଯ୍ୟ କରିବା ପରିବର୍ତ୍ତେ ସାହାଯ୍ୟ ନାମରେ ଶୋଷଣ କରୁଛି ।

ଉପରୋକ୍ତ ଦୁଇଟି ବିଷୟରେ ଆମର ଧାରଣା ପରିଷ୍କାର ହେଲା ପରେ ଆମେ ଏବେ ଓଡ଼ିଶାର ଜାତୀୟ ମୁକ୍ତି ଆନ୍ଦୋଳନ କ୍ଷେତ୍ରକୁ ଆସିବା ।

ଓଡ଼ିଶାର ଜାତୀୟ ମୁକ୍ତି ଆନ୍ଦୋଳନ ଯେତେବେଳେ ସାମ୍ରାଜ୍ୟବାଦ-ବିରୋଧୀ, ତେବେ ସେହି ସାମ୍ରାଜ୍ୟବାଦୀ କିଏ ? ସେମାନେ ପୁଣି କେତେ ଭାଗରେ ବିଭକ୍ତ ? ସେମାନଙ୍କ ମଧ୍ୟରେ ସମ୍ପର୍କ କ'ଣ ? ଏବଂ ସେମାନେ କେଉଁ ଉପାୟରେ ଆମ ଦେଶରେ ଅଛନ୍ତି ? ଏ ସମସ୍ତ ବିଷୟରେ ଆମେ ଯଦି ସଠିକ୍ ଧାରଣା ସୃଷ୍ଟି କରି ନ ପାରିବା ତେବେ ସାମ୍ରାଜ୍ୟବାଦୀକୁ ହଟାଇବା ଆମ ପକ୍ଷରେ କଷ୍ଟକର ହେବ ।

## ସାମ୍ରାଜ୍ୟବାଦୀ ଶକ୍ତି କିଏ ?

ପୂର୍ବରୁ ସୂଚନା ଦିଆଯାଇଛି ଯେ ତଥା କଥିତ ସ୍ୱାଧୀନତା ପୂର୍ବରୁ ଭାରତବର୍ଷ ବ୍ରିଟିଶ୍ ସାମ୍ରାଜ୍ୟବାଦର ଏକଘରିଆ ଉପନିବେଶ ଥିଲା । ତଥା କଥିତ ସ୍ୱାଧୀନତା ପରେ ଭାରତ ବର୍ଷରେ ବ୍ରିଟିଶ୍ ଲଗାଏତ୍ ଆଉ ସମସ୍ତ ପାଶ୍ଚାତ୍ୟ ସାମ୍ରାଜ୍ୟବାଦୀ ଶକ୍ତି, ଆମେରିକୀୟ ସାମ୍ରାଜ୍ୟବାଦ, ତଥା ଜାପାନ ସାମ୍ରାଜ୍ୟବାଦ ଭାରତରେ ପ୍ରବେଶ କଲା । ଠିକ୍ ପରେ ପରେ ସୋଭିଏତ୍ ଦେଶ ଯେତେବେଳେ ସାମ୍ରାଜ୍ୟବାଦୀ ଶକ୍ତିରେ ପରିଣତ ହେଲା ସେ ମଧ୍ୟ ଭାରତରେ ପ୍ରବେଶ କଲା । ତେଣୁ ଭାରତ ଏହି ସମସ୍ତ

ସାମ୍ରାଜ୍ୟବାଦୀ ଶକ୍ତିର ନୂଆ-ଉପନିବେଶ ଏବଂ ଭାରତ ଏହି ସମସ୍ତ ସାମ୍ରାଜ୍ୟବାଦୀ ଶକ୍ତିର ଶିକାର କ୍ଷେତ୍ର ( Hunting Ground ) ।

## ବିଭିନ୍ନ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ମଧ୍ୟରେ ସଂପର୍କ :

ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ମଧ୍ୟରେ ସବୁବେଳେ ଦୁଇଟି ସଂପର୍କ ଥାଏ ।

(କ) ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ମଧ୍ୟରେ ଐକ୍ୟ : ଯେତେବେଳେ କୌଣସି ଉପନିବେଶିକ ଦେଶରେ ଜନଗଣ ସମସ୍ତ ସାମ୍ରାଜ୍ୟବାଦୀ ଶକ୍ତିର ଶୋଷଣରୁ ମୁକ୍ତ ହେବା ପାଇଁ ସ୍ୱାଧୀନତା ସଂଗ୍ରାମ କରନ୍ତି ସେତେବେଳେ ସମସ୍ତ ସାମ୍ରାଜ୍ୟବାଦୀ ଶକ୍ତି ମିଳିତ ହୋଇ ଏହି ସ୍ୱାଧୀନତା ଆନ୍ଦୋଳନକୁ ବିଫଳ କରିବା ପାଇଁ ସମସ୍ତ ଚେଷ୍ଟା କରନ୍ତି । କାରଣ ସେମାନେ ଜାଣନ୍ତି ଯେ କୌଣସି ଦେଶ ବାସ୍ତବରେ ସ୍ୱାଧୀନ ହୋଇଗଲେ ସମସ୍ତ ସାମ୍ରାଜ୍ୟବାଦୀ ଶକ୍ତିର ଡାନାପାଣି ସେ ଦେଶରୁ ବୁଡ଼ିବ । ତେଣୁ ଏହି କ୍ଷେତ୍ରରେ ସମସ୍ତ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ମଧ୍ୟରେ ମେଣ୍ଟ (Collusion) ଦେଖାଯାଏ । ଚୀନ ଜନଗଣଙ୍କର ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନ ସମୟରେ ଏ ଦୃଷ୍ଟାନ୍ତ ଦେଖାଯାଇ ଥିଲା । ଏପରିକି ଉତ୍ତର ଅକ୍ଟୋବର ବିପ୍ଳବପରେ ମଧ୍ୟ ଏହା ଦେଖାଯାଇଥିଲା ।

(ଖ) ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ମଧ୍ୟରେ ସଂଗ୍ରାମ :

ପ୍ରତ୍ୟେକ ସାମ୍ରାଜ୍ୟବାଦୀ ଶକ୍ତିର ନିଜ ନିଜ ଦେଶମାନଙ୍କରେ ନିସ୍ଥମିତ ବ୍ୟବଧାନରେ ସଙ୍କଟ ଦେଖାଯାଏ । ପ୍ରତ୍ୟେକ ଏହି ସଙ୍କଟରୁ ଉଦ୍ଧାର ପାଇବା ପାଇଁ ନିଜ ଦେଶର ବାହାରେ ବିଶ୍ୱ ବଜାରକୁ ଅଧିକ ମାତ୍ରାରେ ଅଧିକାର କରିବାପାଇଁ ଚେଷ୍ଟା ଚଳାନ୍ତି । ଫଳରେ ଏମାନଙ୍କ ମଧ୍ୟରେ ବିଶ୍ୱବଜାରର ପୁନର୍ବଣ୍ଟନ ପାଇଁ ପ୍ରତିଦ୍ୱନ୍ଦ୍ୱିତା ତଥା ଝଗଡ଼ା (Controvertion) ଲାଗିଯାଏ ।

ଏହି ଝଗଡ଼ାର ସମାଧାନ ଦୁଇଟି ଉପାୟରେ ହୁଏ ।

୧-ସାଲିସଦ୍ୱାରା (Compromise) : ପ୍ରତିଦ୍ୱନ୍ଦୀ ସାମ୍ରାଜ୍ୟବାଦୀ ଶକ୍ତିମାନେ ଅର୍ଥନୈତିକ, ରାଜନୈତିକ, ସାମରିକ ତଥା ଭୌଗଳିକ ଆଦି ବିଷୟକୁ ଲକ୍ଷରଖି ବେଳେବେଳେ ବାଧ୍ୟହୁଅନ୍ତି ସେମାନଙ୍କ ମଧ୍ୟରେ ସାଲିସ କରିବା ପାଇଁ । ଏହି ସାଲିସ ଦ୍ୱାରା ବିଶ୍ୱ ବଜାରର ପୁନର୍ବଣ୍ଟନ ହୁଏ ।

୨-ବିଶ୍ୱଯୁଦ୍ଧଦ୍ୱାରା (World war): ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ମଧ୍ୟରେ ସାଲିସ ଚିରଦିନ କାମ କରେ ନାହିଁ । ପରବର୍ତ୍ତୀ ଅବସ୍ଥାରେ ସାଲିସ ଦ୍ୱାରା ବିଶ୍ୱବଜାରର

ବର୍ତ୍ତନ ସେମାନଙ୍କର ଆଭ୍ୟନ୍ତରୀଣ ସଂକଟକୁ ଦୂରକରେ ନାହିଁ । ତେଣୁ ପ୍ରତ୍ୟେକ ରହିଁଲା ତତୋଽଧିକ ବଣ୍ଟନକାର । ଏହି ତତୋଽଧିକ ବଣ୍ଟନକାର ପାଇଁ ଛଡା-ପଟ୍ଟା ଗ୍ରହିତ ଥିଲାବେଳେ ଏକ ସୁଯୋଗ ଦେଖି ସେମାନେ 'ଆମେମ୍ଭ' କରି ବସିଲେ ବିଶ୍ୱଯୁଦ୍ଧ । ପ୍ରଥମ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧ ଏହାର ଜ୍ୱଳନ୍ତ ଉଦାହରଣ । ବିଶ୍ୱଯୁଦ୍ଧ ପରେ ବିଜୟୀ-ପକ୍ଷ ବଣ୍ଟନକାରରୁ ସର୍ବାଧିକ ଉପପାଏ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ସାମ୍ରାଜ୍ୟବାଦୀ ଶକ୍ତିମାନେ ନିଜ ନିଜର ଉପନିବେଶମାନ ଜବରଦଖଲ କରି ସେହି ଉପନିବେଶମାନଙ୍କୁ ପ୍ରତ୍ୟକ୍ଷ ଶାସନ କରୁଥିଲେ । ଗୋଟିଏ ସାମ୍ରାଜ୍ୟବାଦୀ ଶକ୍ତି ଅନ୍ୟ ଏକ ସାମ୍ରାଜ୍ୟବାଦୀ ଶକ୍ତିଠାରୁ ଉପନିବେଶ ଛଡାଇବାକୁ ଚାହିଁଲେ ସେ ପ୍ରତ୍ୟକ୍ଷ ଯୁଦ୍ଧ କରି ଆରେ ଅନ୍ୟଠାରୁ ଉପନିବେଶ ଛଡ଼ାଇ ନିଜର ଉପନିବେଶ ବନାଇ ରଖୁଥିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧପରେ ସାମ୍ରାଜ୍ୟବାଦୀମାନଙ୍କର ଶାସନର ପଦ୍ଧତି ବଦଳିଗଲା । ସେମାନେ ଉପନିବେଶକୁ ନବ-ଉପନିବେଶରେ ପରିଣତ କଲେ । ଅର୍ଥାତ ସେହି ଦେଶର ଏକ ଗୋଷ୍ଠୀକୁ ନିଜର ଦଲାଲ କରାଇ ତାଙ୍କ ଜରିଆରେ ସେହି ଦେଶକୁ ଅର୍ଥନୈତିକ, ରାଜନୈତିକ, ସାଂସ୍କୃତିକ ତଥା ସାମରିକ ଭାବେ ନିୟନ୍ତ୍ରଣ କଲେ ।

ଏହି ନବ-ଉପନିବେଶିକ ପର୍ଯ୍ୟାୟରେ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ମଧ୍ୟରେ ବଣ୍ଟନକାର ପାଇଁ ଝଗଡ଼ାର ସମାଧାନ ନିମ୍ନଲିଖିତ ଉପାୟରେ ସୀମିତ ରହିଛି ।

## ୧ । କୁପ୍ (Coup)

Local war କିମ୍ବା Proxy war ଦ୍ୱାରା :

ଶ୍ରେଷ୍ଠ ଶ୍ରେଷ୍ଠ ନବ-ଉପନିବେଶିକ ଦେଶମାନଙ୍କରେ ପ୍ରାୟ ପ୍ରତ୍ୟେକ ସାମ୍ରାଜ୍ୟବାଦ ଶକ୍ତି ନିଜ ନିଜର ନବ-ଉପନିବେଶିକ ଦେଶର ଦଲାଲ ଜରିଆରେ ସେ ଦେଶର ବଜାରକୁ ସ୍ୱତନ୍ତ୍ର ଭାବେ ଶୋଷଣ କରୁଛି । ଯେଉଁଭଳି ଆମେରିକା ଫିଲିପାଇନ୍ସକୁ ବ୍ରିଟେନ ଦକ୍ଷିଣ ଆଫ୍ରିକାକୁ, ରୁଷ ପୂର୍ବ-ୟୁରୋପୀୟ କେତେକ ଦେଶଗୁଡ଼ିକୁ । ଏହିଭଳି କ୍ଷୁଦ୍ର ଦେଶୀୟ କୌଣସି ନବ-ଉପନିବେଶରେ ଯଦି କୌଣସି ସାମ୍ରାଜ୍ୟ-ବାଦ ଶକ୍ତି ବଜାର ଦଖଲ କରିବାକୁ ଚାହେଁ ତେବେ ସେ ସେହି ଦେଶରେ ଆଉ ଏକ ଦଲାଲ-ଗୋଷ୍ଠୀ ନିରୂପଣ କରି ତା'ର ଜରିଆରେ ଶାସନରେ ଥିବା ଅନ୍ୟ ଏକ ସାମ୍ରାଜ୍ୟବାଦର ଦଲାଲ-ଶ୍ରେଣୀକୁ କୁପ୍ ଦ୍ୱାରା ଉତ୍ଖାତ୍ କରି ନିଜର ଦଲାଲକୁ ଶାସନରେ ପ୍ରତିଷ୍ଠା କରେ ଏବଂ ଏହି ଦଲାଲ ଜରିଆରେ ସେ ଦେଶରେ ବଜାରକୁ ଦଖଲ କରେ । ଉଦାହରଣ ସ୍ୱରୂପ ରୁଷ ଦକ୍ଷିଣ ଭିଏତ୍ନାମରୁ ଆମେରିକାର ଦଲାଲକୁ ହଟାଇ ନିଜର ଦଲାଲକୁ ପ୍ରତିଷ୍ଠା କରିବା ତଥା ଅଫ୍ଗାନିସ୍ଥାନରେ ଆମେ-ରିକାର ଦଲାଲକୁ ହଟାଇ ନିଜର ଦଲାଲ-ଶ୍ରେଣୀକୁ ଶାସନରେ ପ୍ରତିଷ୍ଠା କରିବା । ପୋଲଣ୍ଡରେ ଆମେରିକା ସୋଭିଏତ୍‌ର ଦଲାଲ ଶ୍ରେଣୀକୁ ଉତ୍ଖାତ କରି ନିଜର

ଦଳଙ୍କୁ ପ୍ରତିଷ୍ଠା କରିବା ପାଇଁ ପ୍ରବଳ ଉଦ୍ୟମ ଚଳାଇବା । ଚିଲିରେ ଆମେରିକା କୁପ୍ ଦ୍ୱାରା ଏଲେଣ୍ଡ ସରକାରକୁ ହଟାଇ ନିଜର ଦଳର ଶ୍ରେଣୀକୁ ପ୍ରତିଷ୍ଠା କରିବା । ସେହିଭଳି Local war ଦ୍ୱାରା ଆମେରିକା ନିକାରାଗୁଆକୁ ଓ ବ୍ରିଟେନ୍ ଫାକ୍‌ଲାଣ୍ଡକୁ ଦଖଲ କରିବା । ଇରାକ୍ ଓ ଇରାନ୍ ଯୁଦ୍ଧରେ ଆମେରିକା ଓ ସୋଭିଏତ୍ ରୁଷର Proxy war ଖେଳିବା ଇତ୍ୟାଦି ବଜାର ଦଖଲ ପାଇଁ ପ୍ରଚେଷ୍ଟା ମାତ୍ର ।

## ୨ । ସାଲିସ ଦ୍ୱାରା :

ମନେହୁଏ ଭାରତ ବର୍ଷ ଭଳି ବିଶାଳ ଦେଶରେ କୁପ୍ କିମ୍ବା Proxy-war କଷ୍ଟକର ବ୍ୟାପର । ଭାରତ ବର୍ଷକୁ କୌଣସି ଏକ ସାମ୍ରାଜ୍ୟବାଦ ଶକ୍ତି ଏକକ ଭାବେ ନିୟନ୍ତ୍ରଣ କରିବା ଯେମିତି କଷ୍ଟକର ସେମିତି ବି କୌଣସି ସାମ୍ରାଜ୍ୟବାଦ ଶକ୍ତିକୁ ଭାରତର ସମସ୍ତ ବଜାରକୁ ଛାଡ଼ିଦେଇ ଅନ୍ୟାନ୍ୟ ସାମ୍ରାଜ୍ୟବାଦୀ ଶକ୍ତିମାନେ ହାତଗୋଡ ଯୋଡ଼ି ବସିରହିବା ସଂପୂର୍ଣ୍ଣ ଅସମ୍ଭବ । ଆଉ ସେମାନଙ୍କ ପକ୍ଷରେ ଅସହ୍ୟକର ବ୍ୟାପାର ମଧ୍ୟ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଯେତେବେଳେ ଜାପାନ ଚୀନର ସମସ୍ତ ବଜାରକୁ ଦଖଲ କରିବା ପାଇଁ ଏକା ଏକା ତା'ର ସାମରିକ ଶକ୍ତି ନେଇ ସମସ୍ତ ଚୀନକୁ ଗ୍ରାସିବାକୁ ବସିଲା, ସେତେବେଳେ ଅନ୍ୟାନ୍ୟ ସାମ୍ରାଜ୍ୟବାଦୀ ଶକ୍ତିମାନେ (ଆମେରିକା, ଫ୍ରାନ୍ସ, ବ୍ରିଟେନ୍) ଏକଜୁଟ ହୋଇଗଲେ ଜାପାନକୁ ଧ୍ୱଂସ କରିବା ପାଇଁ । ଠିକ୍ ସେହିଭଳି ଯଦି କେବେ ଭବିଷ୍ୟତରେ କୌଣସି ସାମ୍ରା-ଜ୍ୟବାଦୀ ଶକ୍ତି ଭାରତର ସମସ୍ତ ବଜାରକୁ ଦଖଲ କରିବାପାଇଁ ଏକା ଭାରତକୁ ମାଡ଼ି ବସେ ତେବେ ଅନ୍ୟାନ୍ୟ ସାମ୍ରାଜ୍ୟବାଦୀ ଶକ୍ତିମାନେ ସେହି ସାମ୍ରାଜ୍ୟବାଦୀ ଶକ୍ତି ବିରୁଦ୍ଧରେ ବିଶ୍ୱଯୁଦ୍ଧ କରିବାକୁ ବାଧହେବେ । ତେଣୁ ବର୍ତ୍ତମାନ ଅବସ୍ଥାରେ ଭାରତ ଭଳି ବିଶାଳ ଦେଶରେ ସମସ୍ତ ସାମ୍ରାଜ୍ୟବାଦୀ ଶକ୍ତିମାନେ ସାଲିସ ଦ୍ୱାରା ଭାରତର ବଜାରକୁ ବାଣ୍ଟି ନେଇଛନ୍ତି ।

## ୩ । ବିଶ୍ୱଯୁଦ୍ଧ ଦ୍ୱାରା :

ଭବିଷ୍ୟତରେ ସାମ୍ରାଜ୍ୟବାଦୀ ଶକ୍ତିମାନେ କୁପ୍, Local war, Proxy war ଏବଂ ସାଲିସ୍ ଉପାୟରେ ବଜାର ଦଖଲ କରି ସେମାନଙ୍କର ସଙ୍କଟ ଦୂର କରିବାକୁ ଯେତେବେଳେ ବିଫଳ ହେବେ ସେତେବେଳେ ସେମାନେ ସମସ୍ତେ ଏକ ସ୍ୱରରେ ୩ୟ ବିଶ୍ୱଯୁଦ୍ଧକୁ ଡେଇଁ ପଡ଼ିବେ । ବର୍ତ୍ତମାନ ବିଶ୍ୱ ୩ୟ ବିଶ୍ୱଯୁଦ୍ଧ ଆଡକୁ ଖୁବ୍ ଦ୍ରୁତ ବେଗରେ ଗତି କରୁଛି ।

ଉପରୋକ୍ତ ଆଲୋଚନାରେ ଆମେ ଅବଗତ ହେଲେ ଯେ ବର୍ତ୍ତମାନ ଭାରତ ତଥା ଓଡ଼ିଶା ସମସ୍ତ ସାମ୍ରାଜ୍ୟବାଦୀ ଶକ୍ତିର ଶୋଷଣ ଶିକାରରେ କବଳିତ । ସେହି ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ମଧ୍ୟରେ ସାଲିସ ଦ୍ୱାରା ଯାହାକିଛି ନିର୍ଣ୍ଣୟ କରାଯାଉଛି

ତାହା ସେମାନଙ୍କର ଦଳର୍ଣ୍ଣ ସଙ୍ଗ୍ରାରଣସ୍ଥ ଶାସକ ଶ୍ରେଣୀ ତଥା ଓଡ଼ିଶାରେ ଥିବା ସେମାନଙ୍କର ତେଲ ଶାସକ ଦଳ ମାନବାକୁ ବାଧ ।

## ଭାରତରେ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଦଲାଲ ରାଜନୈତିକ ପ୍ରତିନିଧି :

ସଙ୍ଗ୍ରାରଣସ୍ଥ ଶାସକ ଶ୍ରେଣୀ ଯେହେତୁ ସବୁ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର (ସେମାନଙ୍କର ସାଲସ୍ ଅନୁସାରେ ) ପୁଂଜିର ଦାସ ତେଣୁ କୌଣସି ଏକ ନିର୍ଦ୍ଦିଷ୍ଟ ସାମ୍ରାଜ୍ୟବାଦୀ ଶକ୍ତିକୁ ପ୍ରଭୁ ବୋଲି ବାଛି ଅନ୍ୟ ସାମ୍ରାଜ୍ୟବାଦୀ ଶକ୍ତିକୁ ପାତର ଅନ୍ତର କରିବା ସେ ସ୍ୱାଧୀନତା ତା'ର ବର୍ତ୍ତମାନ ନାହିଁ । ଅପରପକ୍ଷରେ ଭବିଷ୍ୟତରେ ଭାରତର ବଜାରକୁ କେଉଁ ସାମ୍ରାଜ୍ୟବାଦ କେତେ ବେଶି ଦଖଲ କରିବ ସେଥିପାଇଁ ପ୍ରତ୍ୟେକ ସାମ୍ରାଜ୍ୟବାଦ ଶକ୍ତି ଏହି ସଙ୍ଗ୍ରାରଣସ୍ଥ ଶାସକ ଶ୍ରେଣୀ ମଧ୍ୟରେ ନିଜ ନିଜର ଦଲାଲ ଗୋଷ୍ଠୀ ସୃଷ୍ଟି କରିବାରେ ରତ ।

ଯଦିଓ ସଙ୍ଗ୍ରାରଣସ୍ଥ ଶାସକ ଶ୍ରେଣୀ ମଧ୍ୟରେ କେତେ ଓ କିଏ କାହାର ଦଲାଲ ନିର୍ଣ୍ଣୟ କରିବା ବର୍ତ୍ତମାନ କଷ୍ଟକର ବ୍ୟାପାର । କିନ୍ତୁ ଏହାର ରାଜନୈତିକ ପ୍ରତିନିଧିମାନଙ୍କ କ୍ଷେତ୍ରରେ କିଏ କାହାର ଅନୁଗାମୀ କେତେକାଂଶରେ ସ୍ପଷ୍ଟହୁଏ । ଉଦାହରଣ ସ୍ୱରୂପ CPI, CPI (M) ପାର୍ଟିର ନେତୃତ୍ୱ ସୋଭିଏତ ସାମ୍ରାଜ୍ୟବାଦୀ ଶକ୍ତିର ଖୋଲା ଖୋଲି ଦଲାଲ ଥିଲାବେଳେ ଏବଂ ପାଶ୍ଚାତ୍ୟ ଓ ଆମେରିକା ସାମ୍ରାଜ୍ୟବାଦୀ ଶକ୍ତିର ଘୋର ବିରୋଧୀ ଥିଲାବେଳେ ବି. ଜେ. ପି. ପାର୍ଟି ଖୋଲା ଖୋଲି ଭାବେ ଆମେରିକାର ଅନୁଗାମୀ ଓ ସୋଭିଏତ୍ ସାମ୍ରାଜ୍ୟବାଦୀ ଶକ୍ତିର ଘୋର ବିରୋଧୀ । ଜନତା ଦଳରେ ଆମେରିକାର ସ୍ୱର ବେଶିଟା ଶୁଭେ । କଂଗ୍ରେସ ଦଳ ବିଶେଷକରି ଶାସକ ଦଳ ଥିବାରୁ ଏହାର ସ୍ୱର ପରିମାର୍ଜିତ ଓ ଭାରସାମ୍ୟ ଯୁକ୍ତ ।

ଅନ୍ୟ ଏକ ବୈଶିଷ୍ଟ୍ୟ ଭାରତୀୟ ରାଜନୈତିକ ପାର୍ଟିମାନଙ୍କ ମଧ୍ୟରେ ଦେଖାଯାଏ । ଯଦିଓ ଜନତା ଓ B.J.P. ପାଶ୍ଚାତ୍ୟ ସାମ୍ରାଜ୍ୟବାଦ ଶକ୍ତିର ଅନୁଗାମୀ ଓ ସୋଭିଏତ ସାମ୍ରାଜ୍ୟବାଦର ଘୋର ବିରୋଧୀ । କିନ୍ତୁ ୧୯୭୭-୮୦ ସମୟରେ ଉଭୟ କେନ୍ଦ୍ର ଓ ରାଜ୍ୟରେ କ୍ଷମତାରେ ଥିଲେ "୧୯୭୧ର ଭାରତ-ସୋଭିଏତ 'ମୈତ୍ରୀ ଚୁକ୍ତି' ନାମରେ ସାମରିକ ଚୁକ୍ତି"କୁ ଏମାନେ ବାତିଲ କରି ନଥିଲେ । ଠିକ୍ ସେହିଭଳି CPI(M) ପାର୍ଟି ଆମେରିକା-ସାମ୍ରାଜ୍ୟବାଦର ଘୋର ବିରୋଧୀ ଥିଲାବେଳେ ପଶ୍ଚିମବଙ୍ଗରେ କ୍ଷମତାରେ ଥିଲେ ମଧ୍ୟ ପାଶ୍ଚାତ୍ୟ ସାମ୍ରାଜ୍ୟବାଦୀ ଶକ୍ତିର Multinational-Corporationକୁ ନିଜ ରାଜ୍ୟରେ ସ୍ୱାଗତ କରିବାପାଇଁ ପଛାଇ ନାହାଁନ୍ତି ।

ଏଥିରୁ ପରିଷ୍କାର ଯେ ଭାରତ ବର୍ଷରେ ବର୍ତ୍ତମାନ ଯାହାକିଛି ଅର୍ଥନୈତିକ ଓ

ସାମରିକ ବିକାଶ ଘଟୁଛି ଏହା ସମସ୍ତ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ମିଳିତ ନୀତି ଦ୍ୱାରା । ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀ ତଥା ଏମାନଙ୍କର ସମସ୍ତ ରାଜନୈତିକ ପ୍ରତିନିଧି ଗୋଷ୍ଠିଗତ ଭାବେ ଯେ ଯାହାର ଅନୁଗାମୀ କିମ୍ବା ବିରୋଧୀ ହୁଅନ୍ତୁ ନା କାହିଁକି ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ମିଳିତ ନୀତିକୁ ଏମାନେ ବହନ କରିବାକୁ ବାଧ୍ୟ । ଏହାକୁ ଲଂଘନ କରିବା ଏମାନଙ୍କ ପକ୍ଷେ ସଂପୂର୍ଣ୍ଣ ଅସମ୍ଭବ ।

ଉଦାହରଣ ସ୍ୱରୂପ, ରୁଷ ସାହାଯ୍ୟରେ ବାଲିଆପାଳରେ ଯେଉଁ କ୍ଷେପଣାସ୍ତ୍ର ଘାଟୀ ହେବାକୁ ଯାଉଛି ଜନତା ପାର୍ଟି ଭାରତରେ ଏହାକୁ ଆଦୌ ନ କରିଦେବା ପାଇଁ ଚାହୁଁନାହିଁ । କେବଳ ବାଲିଆପାଳରୁ ଏହା ଉଠିଯାଉ ବୋଲି ଏ ପାର୍ଟି ଅମନ ମନେ ଦାବୀ କରୁଛି । କାରଣ ବାଲିଆପାଳରେ କିମ୍ବା ଭାରତର କୌଣସି ଜାଗାରେ କ୍ଷେପଣାସ୍ତ୍ର ଘାଟୀ ହେବା କେବଳ ରୁଷ ଦେଶରେ ନୀତି ନୁହେଁ । ଏହା ସାରା ବିଶ୍ୱର ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ମିଳିତ ନୀତି । ତେଣୁ ପ୍ରଭୁ-ମାନଙ୍କର ମିଳିତ ନୀତିକୁ କୌଣସି ଭଡ଼ାଟିଆ ଦାସ ଗୋଷ୍ଠୀ କ'ଣ ବିରୋଧ କରି ପାରିବ ?

ସୁତରାଂ ଓଡ଼ିଶାରେ ସାମ୍ରାଜ୍ୟବାଦ-ବିରୋଧୀ ଜାତୀୟ-ମୁକ୍ତି ଆନ୍ଦୋଳନ ଚଳାଇବାକୁ ହେଲେ ଏହି ସମସ୍ତ ରାଜନୈତିକ ଦଳମାନଙ୍କର ଚେହେରା ମନେ ରଖିବାକୁ ହେବ ।

## ବାଲିଆପାଳକୁ କେନ୍ଦ୍ର କରି କେତୋଟି ପ୍ରଶ୍ନ :

ବାଲିଆପାଳକୁ କେନ୍ଦ୍ର କରି କେତୋଟି ପ୍ରଶ୍ନ ଆସୁଛି । ସେହି ପ୍ରଶ୍ନ ସମ୍ବନ୍ଧରେ ଆମେ ପରିଷ୍କାର ନ ହେଲେ ଓଡ଼ିଶାର ଜାତୀୟ ମୁକ୍ତି ଆନ୍ଦୋଳନ ବାଧାପ୍ରାପ୍ତ ହେବ ।

### (କ) ପ୍ରତିରକ୍ଷା :

ସର୍ବଭାରତୀୟ ଶାସକ ଶ୍ରେଣୀ ତଥା ଓଡ଼ିଶା ସରକାର କହି ଆସୁଛି ଯେ ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟୀ ହେଉଛି ଭାରତର ପ୍ରତିରକ୍ଷା ପାଇଁ । ପୂର୍ବରୁ ସ୍ପଷ୍ଟ କରି ଦିଆଯାଇଛି ଯେ ଭାରତର ପ୍ରତିରକ୍ଷାମାନେ ସାମ୍ରାଜ୍ୟବାଦୀ ଶକ୍ତିର ଶୋଷଣର ପ୍ରତିରକ୍ଷା ତଥା ସେମାନଙ୍କର ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀର ପ୍ରତିରକ୍ଷା । ଏହା ଓଡ଼ିଶାର ମେହନତୀ ଜନଗଣଙ୍କର ପ୍ରତିରକ୍ଷା ପାଇଁ ନୁହେଁ । କିମ୍ବା ଭାରତର ମେହନତୀ ଜନଗଣ-ଙ୍କର ପ୍ରତିରକ୍ଷା ପାଇଁ ନୁହେଁ । ସାମ୍ରାଜ୍ୟବାଦର ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀ ତଥା ଓଡ଼ିଶାରେ ଥିବା ତାର ଚେଲା ଶାସକ ଦଳଙ୍କ କଥା ଅନୁସାରେ ଧରିଯାଉ

ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟି ହେଲେ ଭାରତର ସମସ୍ତ ମେହନତୀ ଜନଗଣଙ୍କର ପ୍ରତିରକ୍ଷା ହେବ । ତେବେ ପ୍ରତିରକ୍ଷା କାହା ବିରୁଦ୍ଧରେ ?

## ଆମେରିକା ବିରୁଦ୍ଧରେ ?

କେତେକ 'ଦେଶ ପ୍ରେମୀ' ବିଶେଷ କରି ଅନ୍ଧ୍ରର CPI, CPI(M)ର ନେତୃବୃନ୍ଦ ଯୁକ୍ତି କରନ୍ତି ଯେ ଡିଏଗୋଗାର୍ସିଆରେ ଆମେରିକା ତା'ର କ୍ଷେପଣାସ୍ତ୍ର ଘାଟୀ କରିଥାଇଛି । ଏହା ଭାରତ ପାଇଁ ବିପଦ । "ଆଜି ଭାରତର ଚତୁର୍ଦ୍ଦିଗ ସାମରିକ ଘାଟୀଦ୍ୱାରା ପରିବେଷ୍ଟିତ । ପାକିସ୍ଥାନ, ବଙ୍ଗଳା ଦେଶ, ଶ୍ରୀଲଙ୍କା, ଡିଆଗୋଗାର୍ସିଆ ଓ ଭାରତ ମହାସାଗରରେ ଆମେରିକାର ଅନ୍ୟଘାଟୀ ଗୁଡ଼ିକ ହୋଇ ସାରିଲାଣି ଏବଂ ସେସବୁ ସ୍ଥାନରୁ ଆମଦେଶ ବିରୁଦ୍ଧରେ ସକଳ ପ୍ରକାର କାର୍ଯ୍ୟ ଚାଲିଛି ।" [ସାମ୍ୟବାଦୀ - ୨୪ ଅଗଷ୍ଟ, ୧୯୮୭-ପୃଷ୍ଠା ୮ ।] ତେଣୁ ଏହାକୁ ରୋକିବା ପାଇଁ ଭାରତ ମଧ୍ୟ ତାର ପ୍ରତିରକ୍ଷା ପାଇଁ କ୍ଷେପଣାସ୍ତ୍ର ଘାଟୀ କରିବା ଉଚିତ୍ । ତାହେଲେ ଏମାନଙ୍କ କଥା ଅନୁଯାଇ ଧରି ନେବାକୁ ହେବ ଯେ ପାଶ୍ଚାତ୍ୟ ସାମ୍ରାଜ୍ୟବାଦ ବିଶେଷ କରି ଆମେରିକା ଭାରତର ଶତ୍ରୁ । ଯଦି ଆମେରିକା ଭାରତର ଶତ୍ରୁ, ତେବେ ଯେଉଁ ଭାରତ ସରକାର ରୁଷିଆ ସାହାଯ୍ୟରେ କ୍ଷେପଣାସ୍ତ୍ର ଘାଟୀ ତିଆରି କରୁଛି ସେହି ଭାରତ ସରକାର କିଭଳି ପାଶ୍ଚାତ୍ୟ ଶକ୍ତିର ତଥା ଆମେରିକାର ପୁଂଜି, କାରିଗରୀ କୌଶଳ ତଥା Multinational Corporation ଯାହାକି ଅର୍ଥନୈତିକ ଶୋଷଣର ସାଧନ ଏ ସମସ୍ତଙ୍କୁ ବ୍ୟାକୁଳତାର ସହ ସ୍ୱାଗତ ଜଣାଉଛି ? ଯଦି ଭାରତ ସରକାର ପାଶ୍ଚାତ୍ୟ ଶକ୍ତିର ଅର୍ଥନୈତିକ ଶୋଷଣକୁ ସ୍ୱଇଚ୍ଛାରେ ଗ୍ରହଣ କରି ନିଏ ତେବେ ପାଶ୍ଚାତ୍ୟ ସାମ୍ରାଜ୍ୟବାଦ ଶକ୍ତି କିମ୍ବା ଆମେରିକା କେଉଁ କାରଣରୁ ଭାରତକୁ ଆକ୍ରମଣ କରିବ ?

ଧରି ନିଆଯାଉ କୌଣସି ଏକ ଉଦ୍ଭଟ କାରଣ ଯୋଗୁ ଆମେରିକା ଭାରତକୁ ଆକ୍ରମଣ କରିବାକୁ ଚାହେଁ । ତେଣୁ ଭାରତ ସରକାର ତା'ର ପ୍ରତିରୋଧ କରିବା ପାଇଁ ନିଶ୍ଚିତ ରୂପେ ଅସ୍ତ୍ରରେ ସଜ୍ଜିତ ହେବ । ଅର୍ଥାତ ରୁଷ ସାହାଯ୍ୟରେ ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟୀ କରିପାରିଲେ ଆମେରିକା ସହିତ ଏହା ଟକ୍କର ଦେଇ ପାରିବ । ଅର୍ଥାତ୍ ଆମେରିକା ଯଦି ଡିଏଗୋଗାର୍ସିଆରୁ ଭାରତ ଉପରେ କୌଣସି କ୍ଷେପଣାସ୍ତ୍ର ଛାଡ଼ିଲା ଭାରତ ସରକାର ପ୍ରତି ବଦଳରେ ବାଲିଆପାଳରୁ କ୍ଷେପଣାସ୍ତ୍ର ଆମେରିକା ଘାଟୀ ଡିଏଗୋଗାର୍ସିଆ ଉପରକୁ ଛାଡ଼ିବ । ପୁନଶ୍ଚ ଏହି କ୍ଷେପଣାସ୍ତ୍ରର ଗତି ନିର୍ଦ୍ଧାରଣ ସକାଶେ ନୀଳଗିରିରେ Radar Centre ହେବାକୁ ଯାଉଛି । CPI, CPI(M)ର ନେତୃବୃନ୍ଦ ଜାଣନ୍ତି ଏ Radar Centre କାହାଦ୍ୱାରା ହେବାକୁ ଯାଉଛି ? Indian Expressରେ ପ୍ରକାଶିତ ଏକ ଖବର ଅପର ପୃଷ୍ଠାରେ ଦିଆଗଲା ।

# ଭାରତପାଇଁ ଭି. ଏସ୍ ରାଡ଼ରର ମଞ୍ଜୁରୀ

"ୱାସିଂଟନ, ୨୮-୮-୮୬—ଆମେରିକାରେ ସ୍ୱଳ୍ପ ଦୂରତ୍ୱ କ୍ଷେପଣାସ୍ତ୍ର କାର୍ଯ୍ୟକ୍ରମ ପାଇଁ ରାଡ଼ର ଯନ୍ତ୍ରପାତି କିଣିବା ପାଇଁ ଭାରତ ସରକାରଙ୍କର ଯେଉଁ ବହୁଦିନର ଅନୁରୋଧ ଥିଲା ତାହା ଆମେରିକାର ପ୍ରତିରକ୍ଷା ବିଭାଗ ଏବେ ମଞ୍ଜୁର କଲା । ଓଡ଼ିଶାର ବାଲେଶ୍ୱରରେ ଯେଉଁଠାରେ କି ୩ ହଜାର କୋଟି ଟଙ୍କାର ଜାତୀୟ ପରୀକ୍ଷା ରେଞ୍ଜ ହେବାକୁ ଯାଉଛି ସେଠାରେ ଏହି ଯନ୍ତ୍ରପାତି ଖଞ୍ଜାଯିବ । ଏହି ସ୍ୱଳ୍ପ ଦୂରତ୍ୱ କ୍ଷେପଣାସ୍ତ୍ରର ଗତି ନିର୍ଣ୍ଣୟ କରିବା ପାଇଁ ଏବଂ ଏହାର ଲକ୍ଷ୍ୟର ସଠିକତା ଠିକ୍ କରିବା ପାଇଁ ରାଡ଼ର ବ୍ୟବସ୍ଥା ବ୍ୟବହାର କରାହେବ ।"

[V. S. Radar for India cleared : Washington 28-8-86 The U. S. Defence Department has just cleared a long standing request by the Government of India for purchasing radar equipment for India's Short-Range missiles programme. The equipment will be installed at India's Rs. 3000/-crore National Test Range at Balasore, Orissa. The radar system will be used for tracking the flight path of short-range missiles and for ensuring the target accuracy.]

CPI, CPI(M)ର ନେତୃବୃନ୍ଦ ଏବେ ବୁଝିପାରିଲେ ? ଯେଉଁ କ୍ଷେପଣାସ୍ତ୍ର ବାଲିଆପାଳରୁ ଆମେରିକା ଡିଏଗୋଗାର୍ସିଆ ବିରୁଦ୍ଧରେ ଛଡ଼ାଯିବ ସେହି କ୍ଷେପଣାସ୍ତ୍ରର ଗତିପଥ ଓ ଲକ୍ଷ୍ୟର ସଠିକତା ଠିକ୍ କରିବ ଆମେରିକାର ରାଡ଼ର ? ତେବେ ଆମେରିକା ସରକାର କ'ଣ ବୋକା ? ଅଥବା ଭାରତ ସରକାର ଚାଲାଖ ? ଆମ୍ଭେମାନେ ଆଉ କିଛି ତଥ୍ୟ ଭିତରକୁ ଯିବା ।

# INDIA TRADE AGREEMENT

| Country | Nature | Year of Order | Year of Delivery | No. Delivered |
|---|---|---|---|---|
| France | Air to Ship Missiles | 1982 | | Arming mirrage-2000 fighters licensed. |
| ,, | Anti-Tank Missiles | 1981 | 1982 | 100-to be produced from 1985 |
| ,, | Ship to Ship Missiles | 1982 | | Unspecified No.ordered replace previous S to S to mirrage. |
| ,, | Air to Air Missiles | 1982 | | No. ordered 240 Arming mirrage 2000 fighters |
| U.S.A. | Anti-Tank Missiles | 1980 | | No. ordered 3724 |
| U.S.S.R. | Air to Air missiles | 1980 | 1980<br>1981<br>1982 | 90<br>140<br>140 } Arming Mig 23-S |
| ,, | Anti-Tank missiles | 1980 | | |
| ,, | Surface to Surface missiles Land mob. | 1980 | | |
| ,, | Land mob Surface to Surface missiles | 1982 | | |
| U.K. | Air to Surface missiles | 1983 | | Quality - 12 |

Source : Statistic Survey- The International Institute for statistic study- London.

ଉପରୋକ୍ତ ଟେବୁଲରୁ ଆମମାନଙ୍କ ମନରେ ପ୍ରଶ୍ନ ଉଠେ ଯେ ପାଶ୍ଚାତ୍ୟ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ନେତା ଆମେରିକା ବର୍ତ୍ତମାନ ଯେଉଁ ଭାରତ ସରକାର ବାଲିଆପାଳରେ କ୍ଷେପଣାସ୍ତ୍ର ଘାଣ୍ଟି ସ୍ଥାପନ କରୁଛି ସେହି ଭାରତ ସରକାରଙ୍କୁ ସାମରିକ ଭାବେ ଦୃଢ଼ କରିବାପାଇଁ ଫ୍ରାନ୍ସ, ଇଂଲଣ୍ଡ ଏବଂ ଏପରିକି ଆମେରିକା ସାହାଯ୍ୟ କରିବା କ'ଣ ସମ୍ଭବ ?

ଉପରୋକ୍ତ ତଥ୍ୟମାନଙ୍କରୁ ଆମ୍ଭେମାନେ ଉପନୀତ ଯେ ବର୍ତ୍ତମାନ ଅବସ୍ଥାରେ ଭାରତ ସରକାରଙ୍କର ଶତ୍ରୁ ଆମେରିକା ନୁହେଁ ।

## ପାକିସ୍ଥାନ ବିରୁଦ୍ଧରେ ?

ପୁନଶ୍ଚ ଆମର ସର୍ବଭାରତୀୟ ଶାସକ ଶ୍ରେଣୀ ଅବିରତ ଚିତ୍କାର କରେ ଯେ ଆମେରିକା ପାକିସ୍ଥାନକୁ ସମସ୍ତପ୍ରକାର ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରୁଛି । ପାକିସ୍ଥାନ ସାମରିକ ଦିଗରେ ଭାରତଠାରୁ ଆଗେଇ ଗଲେ ଏହା ଭାରତ ପ୍ରତି ବିପଦ । ତେଣୁ ତାକୁ ପ୍ରତିରୋଧ କରିବାପାଇଁ ବାଲିଆପାଳରେ କ୍ଷେପଣାସ୍ତ୍ର ଘାଣ୍ଟି ସ୍ଥାପନ କରୁଛି ।

ମଜାକଥା ! ଯେଉଁ ପାକିସ୍ଥାନକୁ ସାମରିକ ଦିଗରେ ଦୃଢ଼ କରିବା ପାଇଁ ଆମେରିକା ସମସ୍ତ ପ୍ରକାରର ସାହାଯ୍ୟ ଦେଉଛି ପୁନଶ୍ଚ ସେହି ପାକିସ୍ଥାନକୁ ବାଲିଆପାଳରୁ ଛଡ଼ାଯିବା କ୍ଷେପଣାସ୍ତ୍ରର ଗତିପଥକୁ ନଜର ରଖିବା ପାଇଁ ଏବଂ ଏହାର ଲକ୍ଷର ସଠିକତା ନିଶ୍ଚିତ କରିବା ପାଇଁ ଆମେରିକା ଭାରତକୁ ପ୍ରଚୁର ସାହାଯ୍ୟ କରୁଛି ? "ଚୋରକୁ କହ ଚୋରିକର । ଜଗାଳିକୁ କହ ଜଗିଥା !!"

ଉପରୋକ୍ତ ତଥ୍ୟରୁ ଆମେ ଯାହା ଅନୁମାନ କରୁଛୁ ସର୍ବଭାରତୀୟ ଶାସକ ଶ୍ରେଣୀ, ତାହାର ଚେଲା ଆମ ଓଡ଼ିଶା ସରକାର ଏବଂ CPI, CPI(M) ପାର୍ଟିର ନେତୃତ୍ୱର ସମସ୍ତ ଯୁକ୍ତି ଭିତ୍ତିହୀନ ।

ଆପଣଙ୍କ ମନରେ ନିଶ୍ଚୟ ପ୍ରଶ୍ନ ଆସୁଥିବ ଯେ ଅତୀତରେ ଭାରତ ଓ ପାକିସ୍ଥାନ ମଧ୍ୟରେ ଦୁଇ ଦୁଇ ଥର ଯୁଦ୍ଧ ଲାଗିଯାଇଛି । ଚୀନ ସହିତ ମଧ୍ୟ ଭାରତର ଯୁଦ୍ଧ ଲାଗିଯାଇଛି । ତେଣୁ ଭାରତ ଚୀନ କିମ୍ବା ପାକିସ୍ଥାନକୁ କାହିଁକି ବିପଦର କାରଣ ନଭାବିବ ? ତେବେ ଭାରତ ଓ ପାକିସ୍ଥାନ ମଧ୍ୟରେ ଯୁଦ୍ଧ କାହିଁକି ଲାଗିଲା, ତା'ର କାରଣ କ'ଣ ଆମ୍ଭଙ୍କୁ ଖୋଜି ବାହାର କରିବାକୁ ପଡ଼ିବ ।

## ଭାରତୀୟ ଉପ-ମହାଦେଶୀୟ ପଡ଼ୋଶୀ ଦେଶମାନଙ୍କ ମଧ୍ୟରେ ଯୁଦ୍ଧର କାରଣ—

ଭାରତସ୍ଥ ଉପମହାଦେଶୀୟ ଦେଶମାନଙ୍କ ମଧ୍ୟରେ ଯୁଦ୍ଧର କାରଣମାନ ନିମ୍ନରେ ଦିଆଗଲା —

୧- ଉପ ମହାଦେଶୀୟ ବଜାର ଦଖଲ ପାଇଁ ପ୍ରତିଯୋଗିତା – ପୂର୍ବରୁ ସୂଚିତ କରାଯାଇଛି ଯେ ନବ-ଉପନିବେଶିକ ଦେଶମାନଙ୍କରେ ଯେଉଁ ଶାସକ ଶ୍ରେଣୀମାନେ ଦଳିମାନ ଅଛନ୍ତି ସେମାନେ ସମସ୍ତେ ସାମ୍ରାଜ୍ୟବାଦୀ ଶକ୍ତିର ଦଲାଲ । ସେମାନେ ଏହି ଦଲାଲି ଦ୍ୱାରା କଟୁଟା ମୁନାଫା ଉଠାନ୍ତି । ଏମାନେ ସାମ୍ରାଜ୍ୟବାଦୀମାନଙ୍କର ବଜାରରେ ଯେତେ ବେଶୀ ଦଲାଲି ନେବେ ସେତେ ଏମାନଙ୍କର ମୁନାଫା ଉଠିବ । ତେଣୁ ଏହି ଦଲାଲମାନଙ୍କ ମଧ୍ୟରେ ଦଲାଲି ନେବା ପାଇଁ ପ୍ରତିଯୋଗିତା ଲାଗିଯାଏ । ବିଶେଷ କରି ଏମାନଙ୍କ ମଧ୍ୟରୁ ଅପେକ୍ଷାକୃତ ଶିଳ୍ପରେ ଉନ୍ନତ ନବ-ଉପନିବେଶିକ ଦେଶମାନଙ୍କର ଦଲାଲ ଅପେକ୍ଷାକୃତ ଅନୁନ୍ନତ ନବ-ଉପନିବେଶିକ ବଜାରରେ ଦଲାଲି ନେବା ପାଇଁ ଚେଷ୍ଟା କରନ୍ତି । ଏହା ଯଦି ଅପେକ୍ଷ ବୁଝାମଣା ରେ ନ ହୁଏ ତେବେ ଏମାନେ ବଳପ୍ରୟୋଗ କରିବା ପାଇଁ ସାମରିକ ଦିଗରେ ପ୍ରସ୍ତୁତ ହୁଅନ୍ତି । ଅପେକ୍ଷାକୃତ ଅନୁନ୍ନତ ନବଉପନିବେଶିକ ଦଲାଲମାନେ ଅନ୍ତତଃ ନିଜ ଦେଶୀୟ ବଜାରରେ ଦଲାଲିକୁ ବଜାୟ ରଖିବା ପାଇଁ ସେମାନଙ୍କ ଆକ୍ରମଣରୁ ନିଜକୁ ରକ୍ଷା କରିବା ପ୍ରକାଶେ ଏମାନେ ମଧ୍ୟ ସାମରିକ ଦିଗରେ ପ୍ରସ୍ତୁତ ହୁଅନ୍ତି । କୌଣସି ଏକ ଦୁର୍ବଳ ମୁହୂର୍ତ୍ତରେ ଉଭୟ ଦେଶ ମଧ୍ୟରେ ଯୁଦ୍ଧ ଲାଗିଯାଏ ।

୨-ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଯୁଦ୍ଧାସ୍ତ୍ର ଶିଳ୍ପ (Armament Industry) ସାମ୍ରାଜ୍ୟବାଦ ଯୁଗରେ ପ୍ରଥମେ ସାମ୍ରାଜ୍ୟବାଦର ଚରିତ୍ରକୁ ନ ଜାଣିଲେ ଆନ୍ତର୍ଜାତୀୟ ଓ ଜାତୀୟ ସ୍ତରରେ ଯେଉଁ ଯେଉଁ ଘଟଣା ଘଟିଯାଉଛି ତାହା ବୁଝିବା କଷ୍ଟକର ହେବ । ସାମ୍ରାଜ୍ୟବାଦୀ ଶକ୍ତିମାନେ ତାଙ୍କର ଅନ୍ୟାନ୍ୟ ତିଆରି ପଣ୍ୟ (Commodity) ବିଶ୍ୱ ବଜାରରେ ବିକ୍ରୟ କରି ଯେପରି ପ୍ରଚୁର ଅର୍ଥ ଉପାର୍ଜନ କରନ୍ତି ଠିକ୍ ସେହିଭଳି ଯୁଦ୍ଧପାଇଁ ଯେଉଁ ଅସ୍ତ୍ର ଶସ୍ତ୍ର ଏହି ସାମ୍ରାଜ୍ୟବାଦୀ ଦେଶ ମାନଙ୍କରେ ତିଆରି ହେଉଛି ତାହା ବିଶ୍ୱବଜାରରେ, ବିକ୍ରୟ କରି ପ୍ରଚୁର ମୁନାଫା ଉଠାଇବା ପାଇଁ ସେମାନେ ମଧ୍ୟ ଚାହାନ୍ତି ଏବଂ ଏହି ଯୁଦ୍ଧାସ୍ତ୍ରର ବିକ୍ରୟ ବଜାର ହେଉଛି ସମସ୍ତ ନବ-ଉପନିବେଶିକ ବା ତୃତୀୟ ବିଶ୍ୱର ଦେଶମାନଙ୍କର ବଜାର । ତେଣୁ ନବ-ଉପନିବେଶିକ ଦେଶ ଦେଶ ମଧ୍ୟରେ ଯଦି ଯୁଦ୍ଧ ଲାଗେ ଏବଂ ଏହି ଦେଶ ମାନେ ଯେହେତୁ ଏ ସମସ୍ତ ଯୁଦ୍ଧାସ୍ତ୍ର ନିଜେ ତିଆରି କରିବାକୁ ଅକ୍ଷମ ତେବେ ସେମାନେ ଏହି ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କଠାରୁ ଏହି ସମସ୍ତ ଅସ୍ତ୍ରଶସ୍ତ୍ର କିଣିବାକୁ ବାଧ୍ୟ ହେବେ । ପୁନଶ୍ଚ, ଏହି ଦେଶ ଦେଶ ଭିତରେ ଯେତେ ଯୁଦ୍ଧ ଆରମ୍ଭ ହେବ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ସେତେ ଅସ୍ତ୍ରଶସ୍ତ୍ର ବିକ୍ରୟ ହେବ ଏବଂ ସେମାନଙ୍କର ସେତେ ଲାଭ ହେବ । ସେଥିପାଇଁ ଏହି ସାମ୍ରାଜ୍ୟବାଦୀ ଶକ୍ତିମାନେ ନବ-ଉପନିବେଶିକ ଦେଶରେ

ଥିବା ସେମାନଙ୍କର ଦଲାଲମାନଙ୍କୁ କ୍ଷମତାରୁ ମୁକ୍ତ କରିଦିଅନ୍ତି । ନବ-ଉପନିବେଶିକ ଦେଶମାନଙ୍କରେ ଦଲାଲମାନଙ୍କ ମଧ୍ୟରେ ଦଳାଦଳି ପାଇଁ ପ୍ରତିଯୋଗିତା ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଅସ୍ତ୍ରଶସ୍ତ୍ର ବିକ୍ରୟ କରିବାର ଚକ୍ରାନ୍ତକୁ ସୁବର୍ଣ୍ଣ ସୁଯୋଗ ଯୋଗାଏ ।

୩– ଜନଗଣଙ୍କର ଅସନ୍ତୋଷକୁ ଅନ୍ୟଆଡ଼େ ମୁହାଁଇବା — ତୃତୀୟ ବିଶ୍ୱର ସମସ୍ତ ନବ-ଉପନିବେଶିକ ଦେଶର ଜନଗଣ ସାମ୍ରାଜ୍ୟବାଦୀ ଶକ୍ତି ଦ୍ୱାରା ଏବଂ ଏହି ଦେଶମାନଙ୍କରେ ଥିବା ସେମାନଙ୍କର ଦଲାଲ ଶାସକ ଶ୍ରେଣୀ ଦ୍ୱାରା ନିର୍ମମ ଭାବେ ଶୋଷିତ ଓ ଅତ୍ୟାଚାରିତ । ଏହି ଶୋଷଣ ଓ ଅତ୍ୟାଚାର ଯୋଗୁଁ ଜନଗଣଙ୍କ ମଧ୍ୟରେ ଏହି ଦଲାଲ ଶାସକ ଶ୍ରେଣୀ ଉପରେ ତୀବ୍ର ଅସନ୍ତୋଷ ରହି ଆସୁଛି ଲଗାତାର ଭାବରେ । ଏହି ଶାସକ ଶ୍ରେଣୀ ବିରୁଦ୍ଧରେ ସେମାନଙ୍କର ସଂଗ୍ରାମ କ୍ରମଶଃ ତୀବ୍ରରୁ ତୀବ୍ରତର ହେଉଛି । ତେଣୁ ନବ-ଉପନିବେଶିକ ଦେଶର ମୁଖ୍ୟ ଦଲାଲ ଶାସକ-ଶ୍ରେଣୀ ଜନଗଣଙ୍କର ଅସନ୍ତୋଷକୁ ନିଜ ଉପରୁ ଉଠାଇ ନେଇ ଅନ୍ୟ ଏକ ପଡ଼ୋଶୀ ଦେଶ ଉପରେ ଫୋପାଡ଼ି ଦେବାପାଇଁ ଉକ୍ତ ପଡ଼ୋଶୀ ଦେଶ ବିରୁଦ୍ଧରେ ଯୁଦ୍ଧ ଲଗାଇ ଦିଅନ୍ତି ଏବଂ ଏହି ଯୁଦ୍ଧରେ ଲଢ଼ିବା ପାଇଁ ଜନଗଣଙ୍କର ସମର୍ଥନ ନେଉନ୍ତି । ପୁନଶ୍ଚ ସେମାନେ ଜନଗଣଙ୍କୁ ଦେଶ ପ୍ରେମର ମଦରେ ମଜଗୁଲ କରାଇ ନିଜ ପଛରେ ଧରି ରଖିବାକୁ ସମର୍ଥ ହୁଅନ୍ତି ମଧ୍ୟ ।

ଆପଣମାନେ ଉପରୋକ୍ତ ତିନୋଟି କାରଣକୁ ଯଦି ଗଭୀର ଭାବେ ଅନୁଧ୍ୟାନ କରିବେ ତେବେ ଏସବୁର ମୂଳ କାରଣ ଦେଖିବାକୁ ପାଇବେ ଯେ ତାହା ହେଉଛି ସାମ୍ରାଜ୍ୟବାଦୀ ଶକ୍ତିର ଶୋଷଣ ଓ ଚକ୍ରାନ୍ତ । ତେଣୁ ତୃତୀୟ ବିଶ୍ୱର ନବ-ଉପନିବେଶିକ ଦେଶମାନଙ୍କରେ ପ୍ରତିରକ୍ଷା ନାମରେ ଯେଉଁ ସବୁ କାର୍ଯ୍ୟ ଚାଲିଛି ଏହା ମେହନତୀ ଜନଗଣଙ୍କର ପ୍ରତିରକ୍ଷା ସକାଶେ ନୁହେଁ । ଏହା ସମସ୍ତ ସାମ୍ରାଜ୍ୟବାଦୀ ଶକ୍ତିର ସ୍ୱାର୍ଥରକ୍ଷା ତଥା ସେମାନଙ୍କର ଦଲାଲ ନବ-ଉପନିବେଶିକ ଦେଶର ଶାସକ ଶ୍ରେଣୀର ସ୍ୱାର୍ଥରକ୍ଷା ଓ ପ୍ରତିରକ୍ଷା ।

ଏ କ୍ଷେତ୍ରରେ ପ୍ରତ୍ୟେକ ନବ-ଉପନିବେଶିକ ଦେଶମାନଙ୍କର ଶ୍ରମିକ ଶ୍ରେଣୀ ଓ ମେହନତୀ ଜନଗଣଙ୍କର ସ୍ଲୋଗାନ କ'ଣ ହେବା ଉଚିତ୍ ? ଲେନିନ୍‌ଙ୍କ ମତରେ — "ବିଭିନ୍ନ ଜାତିର ଶ୍ରମିକ ଶ୍ରେଣୀକୁ ଭାଗ ଭାଗ କରିବା ପାଇଁ 'ପିତୃଭୂମିର ପ୍ରତିରକ୍ଷା' ଭଳି ଛଳନାତ୍ମକ ଆବେଦନ ଜରିଆରେ ବର୍ତ୍ତମାନର ବୁର୍ଜୁଆ ଶ୍ରେଣୀ ଯେଉଁ ଉଦ୍ୟମ ନେଉଛି ଶ୍ରେଣୀ—ସଚେତନ ଶ୍ରମିକର ସେଥିପ୍ରତି ଜବାବ ହେଉଛି ସମସ୍ତ ଜାତିର ବୁର୍ଜୁଆ ଶ୍ରେଣୀକୁ ସଂଗ୍ରାମ ଜରିଆରେ ଉତ୍‌ଖାତ୍ କରିବା ସକାଶେ ସେହି ସମସ୍ତ ଜାତିର ଶ୍ରମିକ ଶ୍ରେଣୀକୁ ଏକଜୁଟ

କରିବା ପାଇଁ ପୁନଃ ପୁନଃ ଏବଂ ନେଟେ ନୂଆ ଧରଣର ପ୍ରଚେଷ୍ଟା ଚଳାଇବା ।" [ "To the present day bourgeoisie's attempts to divide and disunite them (the working class of different nations ) by means of hypo— critical appeals for the "defence of the father land" the class conscience workers will reply with ever new and perseverving efforts unite the workers of various nations in the struggle to overthrow the bourgeoisie of all nations." ( The position and Tasks of the socialist International,— V. I. Lenin, Collected works, Vol. 21, P.P. 35-41 ) ]

ପ୍ରିୟ CPI, CPI (M)ର ନେତୃବୃନ୍ଦ, ଟିକଏ ଆପଣଙ୍କର ଗୁରୁ ଲେନିନ୍‌ଙ୍କ ଉକ୍ତିକୁ ସ୍ମରଣ କରନ୍ତୁ ।

ମ,ଙ୍କ୍ସ ସୂଚିତ କରାଯାଇଛି ଯେ ଭାରତୀୟ ଉପ-ମହାଦେଶରେ ସାମ୍ରାଜ୍ୟ-ବାଦୀ ଶକ୍ତିର ବଜାର ଗୁଡ଼ିକରେ ଦଖଲ ନେବାପାଇଁ ତାଙ୍କର ସେଠାକାର ଦଲାଲମାନେ ଆଗଭର ଏବଂ ଏହି ଉପମହାଦେଶରେ ସମସ୍ତ ଦେଶର ଦଲାଲଠାରୁ ଭାରତୀୟ ଶାସକ ଶ୍ରେଣୀ ଅର୍ଥନୈତିକ ଓ ସାମରିକ ଦୃଷ୍ଟିକୋଣରୁ ଶକ୍ତିଶାଳୀ ଓ ଅଧିକ ଅନୁପ୍ରାଣିତ । ତେଣୁ ଭାରତୀୟ ଉପମହାଦେଶରେ ବଡ଼ ସାମ୍ରାଜ୍ୟବାଦର ଶ୍ରେଷ୍ଠ ଦଲାଲୀ କରିବା ପାଇଁ ଭାରତୀୟ ଶାସକ ଶ୍ରେଣୀ ଯେ ଶ୍ରେଷ୍ଠତମ ଦଲାଲ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଅପର ପକ୍ଷରେ ସାମ୍ରାଜ୍ୟବାଦୀ ଶକ୍ତିମାନେ ନବ-ଉପନିବେଶିକ ଶୋଷଣକୁ ଅଧିକ ସୂକ୍ଷ୍ମତର କରିବା ପାଇଁ ( To create a neo-colony under a neo-colony ) ଭାରତୀୟ ଶାସକ ଶ୍ରେଣୀକୁ ଦଲାଲ-ସର୍ଦ୍ଦାର କରିବା ପାଇଁ ମଧ୍ୟ ଅନିଚ୍ଛୁକ ନୁହେଁ । ତେଣୁ ଅନୁନ୍ନତ ଏସୀୟ ଓ ଆଫ୍ରିକୀୟ ଦେଶମାନଙ୍କରେ ଭାରତୀୟ ଶାସକ ଶ୍ରେଣୀର ମିଳିତ ଉଦ୍ୟୋଗ ( Joint-Venture ) କାର୍ଯ୍ୟରେ ସମସ୍ତ ପ୍ରକାର ସାହାଯ୍ୟ ଓ ପ୍ରେରଣା ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ଠାରୁ ମିଳୁଛି । ଏହି ଦୃଷ୍ଟିରୁ ଭାରତୀୟ ଶାସକ ଶ୍ରେଣୀ ଯେ ଖାଲି ଭାରତର ବିଭିନ୍ନ ଜାତିର ମେହନତୀ ଜନଗଣଙ୍କର ଶତ୍ରୁ ତାହା ନୁହେଁ । ଅଧିକନ୍ତୁ ଭାରତୀୟ ଉପ-ମହାଦେଶ (ପାକିସ୍ଥାନ, ଭାରତ, ବଙ୍ଗଳାଦେଶ, ସିଂହଳ, ଭୁଟାନ, ନେପାଳ, ବର୍ମା ଇତ୍ୟାଦି )ର ସମସ୍ତ ଜାତିର ମେହନତୀ ଜନଗଣଙ୍କର ଶତ୍ରୁ । ଏହି ସମସ୍ତ ଜାତିର ମେହନତୀ ଜନଗଣଙ୍କର ବିକାଶର ପ୍ରତିବନ୍ଧକ ।

ତେଣୁ ଭବିଷ୍ୟତରେ ଯଦି ଭାରତ-ପାକିସ୍ଥାନ କିମ୍ବା ଭାରତ-ବଙ୍ଗଳାଦେଶ କିମ୍ବା ଭାରତ ଓ ଅନ୍ୟ କୌଣସି ପଡ଼ୋଶୀ ଦେଶ ସହିତ ଯୁଦ୍ଧ ହୁଏ ତେବେ ଏହି ଯୁଦ୍ଧରେ କିଏ ଜିତିବ ଓ କିଏ ହାରିବ ତାହା ଆଗରୁ କହି ହେବ ନାହିଁ । କିନ୍ତୁ ଭାରତ ଯଦି ହାରେ ଏହା ଶ୍ରମିକ ଶ୍ରେଣୀ ତଥା ବିଭିନ୍ନ ଜାତିର ମେହନତୀ ଜନଗଣଙ୍କର ପକ୍ଷେ କମ୍ କ୍ଷତିକାରକ । ଏକଥା କହିଲେବେଳେ CPI ଓ CPI (M)ର ନେତୃବୃନ୍ଦ ନିଶ୍ଚିତ ରୂପେ ହସି ଉଠିବେ । ସେଥିପାଇଁ ସେମାନଙ୍କର ଗୁରୁ ଲେନିନ୍‌ଙ୍କର ଆଜି ଏକ ଉକ୍ତିକୁ ଏଠାରେ ଉଲ୍ଲେଖ କରାଯାଉ ।

"ବର୍ତ୍ତମାନ ପରିସ୍ଥିତିରେ ଯୁଦ୍ଧଖୋର ଜାତିର ଦୁଇଟି ଗୋଷ୍ଠୀ ମଧ୍ୟରୁ କେଉଁ ଗୋଷ୍ଠୀର ପରାଜୟ ସମାଜବାଦ ପକ୍ଷରେ କମ କ୍ଷତିକାରକ ବିଶ୍ୱ ସର୍ବହରା ଶ୍ରେଣୀ ପକ୍ଷରେ ନିର୍ଣ୍ଣୟ କରିବା ଅସମ୍ଭବ । କିନ୍ତୁ ଆମ୍ଭ ରୁଷର ସାମାଜିକ-ଗଣତନ୍ତ୍ରବାଦୀ ମାନଙ୍କର ତିଳେମାତ୍ର ସନ୍ଦେହ ନାହିଁ ଯେ ରୁଷର ସମସ୍ତ ଜାତିର ମେହନତୀ ଜନଗଣ ଏବଂ ଶ୍ରମିକ ଶ୍ରେଣୀ ପକ୍ଷରେ ଜାର୍-ଶାସନର ପରାସ୍ତ କମ୍ କ୍ଷତି କାରକ ହେବ । ଯେଉଁ ଜାର୍ ଙ୍କ ସବୁଠାରୁ ପ୍ରତିକ୍ରିୟାଶୀଳ ବର୍ବର ସରକାର, ଯେ କି ୟୁରୋପ ଏବଂ ଏସିଆର ବହୁ ଜାତିକୁ ଏବଂ ସବୁଠାରୁ ଅଧିକ ଜନଗଣଙ୍କୁ ଦମନ କରି ରଖିଛି ।" [ "In the present situation it is impossible to determine, from the standpoint of the international proletariat, the defeat of which of the groups of belligerent nations would be lesser evil for socialism. But to us Russian Social-Democrats there can not be the slightest doubt that from the standpoint of the working class and of the toiling masses of all the nations of Russia, the defeat of the tsarist monarchy, the most reactionary and barbarous of governments, which is oppressing the largest number of nations and the greatest mass of the population of Europe and Asia, would be the lesser evil." ( The war and Russian Social-Democracy. V. I Lenin, Collected works, Vol. 21, PP. 25-34 ) ]

ତଥାପି CPI, CPI (M)ର ନେତୃବୃନ୍ଦ ଆପଣଙ୍କ ଗୁରୁ ଲେନିନ୍‌ଙ୍କୁ ଲକ୍ଷ କରନ୍ତୁ । ସେ ରୁଷ ଦେଶର କମ୍ୟୁନିଷ୍ଟ ପାର୍ଟିର ନେତା ହୋଇ ଜାପାନ ଯୁଦ୍ଧରେ

ଉଷ୍ମ ଜାଗ ଶାସନର ପରାଜୟକୁ ଅନ୍ୟ ଦେଶର ବୃଦ୍ଧୁଆ ସରକାରଙ୍କର ପରାଜୟ ଠାରୁ କମ୍ କ୍ଷତିକାରକ ବୋଲି ବିଚାରକୁ ବାଧ୍ୟ କରୁଥିଲେ ।

## ଦେଶର ପ୍ରତିରକ୍ଷାମାନେ କ'ଣ ?

ତେବେ ବର୍ତ୍ତମାନ ପ୍ରଶ୍ନ ଆସୁଛି ଦେଶର ପ୍ରତିରକ୍ଷାମାନେ କ'ଣ ? ସାମ୍ରାଜ୍ୟବାଦୀ ଯୁଗରେ ଯେତେବେଳେ ତୃତୀୟ ବିଶ୍ୱର ସମସ୍ତ ଦେଶ (ଭାରତ ଲଗାଏତ) ସାମ୍ରାଜ୍ୟବାଦର ଶୋଷଣରେ ଜର୍ଜରିତ । ସେତେବେଳେ ଦେଶର ପ୍ରତିରକ୍ଷାମାନେ ସାମ୍ରାଜ୍ୟବାଦର ଶୋଷଣରେ ଜର୍ଜରିତ ମେହନତି ଜନଗଣ ତଥା ଶ୍ରମିକ ଶ୍ରେଣୀ ପ୍ରତିରକ୍ଷା । ସାମ୍ରାଜ୍ୟବାଦର ପୁନଃ ପୁନଃ ନୂଆ ଆକ୍ରମଣରୁ ପ୍ରତିରକ୍ଷା । ସେ ନୂଆ ଆକ୍ରମଣ ଏବେ କ'ଣ ? ଆଗାମୀ ତୃତୀୟ ବିଶ୍ୱଯୁଦ୍ଧର ଆକ୍ରମଣ । ସର୍ବଶ୍ରେଷ୍ଠ ଆକ୍ରମଣ ସେ ଆକ୍ରମଣ ନୂଆ କିଛି ନୁହେଁ । ଏହା ବହୁ ପୁରୁଣା କିନ୍ତୁ ଏଠାରେ ନୂଆ ଆକ୍ରମଣ ହେଉଛି ତୃତୀୟ ବିଶ୍ୱରେ ଯୁଦ୍ଧର ଆଧୁନିକ-ଯନ୍ତ୍ରପାତି ତିଆରି କରିବା । ପାରମାଣବିକ ଅସ୍ତ୍ରଶସ୍ତ୍ର ତିଆରି କରିବା । ଏହାର କାରଣ ? ସାମ୍ରାଜ୍ୟବାଦ ଦେଶର ଜନଗଣ ବହୁ ସଚେତନ । ସେ ଦେଶରେ ପାରମାଣବିକ ଅସ୍ତ୍ରଶସ୍ତ୍ର ତିଆରି କରିବା ବିରୁଦ୍ଧରେ ଜନଗଣ ବହୁ ଆନ୍ଦୋଳନ କଲେଣି । ଯେହେତୁ ସେ ଦେଶର ଜନଗଣ ଆଣବିକ ଯୁଦ୍ଧର ଭୟାବହ ପରିସ୍ଥିତି ତଥା ଆଣବିକ ଅସ୍ତ୍ରଶସ୍ତ୍ର ତିଆରି କାରଖାନାରେ ଦୁର୍ଘଟଣା ଯୋଗୁଁ କ୍ଷୟ କ୍ଷତିରେ ଅନୁଭବୀ । ଏ ଆନ୍ଦୋଳନ ଯଦି ଲାଗି ରହେ ତେବେ ସେ ଦେଶରେ ବିପ୍ଳବ ଘଟିଯିବା କିଛି ଅସମ୍ଭବ ନୁହେଁ । ଏହା ବର୍ତ୍ତମାନ ସାମ୍ରାଜ୍ୟବାଦ ଦେଶରେ ଅନ୍ୟତମ ପ୍ରଧାନ ସମସ୍ୟା । ପୂର୍ବରୁ ସୂଚାଇ ଦିଆଯାଇଛି ଯେ ସାମ୍ରାଜ୍ୟବାଦ ଦେଶରେ ଯାହା ସଂକଟ ଦେଖାଯାଏ ସେ ସଂକଟ ସଙ୍ଗେ ସଙ୍ଗେ ଉପନିବେଶିକ କିମ୍ବା ନବ-ଉପନିବେଶିକ ଦେଶକୁ ଫୋପଡା ଯାଏ । ତେଣୁ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ବର୍ତ୍ତମାନ ଯୋଜନା ଭାରତ ଭଳି ତୃତୀୟ ବିଶ୍ୱର ବିଭିନ୍ନ ଦେଶରେ ଯୁଦ୍ଧ ପାଇଁ ଆଣବିକ ଅସ୍ତ୍ରଶସ୍ତ୍ର ତିଆରି କରିବା । ପ୍ରଥମତଃ ଏଠାରେ ଏହି କାରଖାନା ପାଇଁ ଶସ୍ତା ଶ୍ରମ ମିଳିବ । ଦ୍ୱିତୀୟତଃ ଏହି କାରଖାନାର ଦୁର୍ଘଟଣାରେ ଶ୍ରମିକ କିମ୍ବା ଆଖପାଖ ଅଞ୍ଚଳର ଜନଗଣ ମୃତ୍ୟୁବରଣ କଲେ ସହଜରେ ଫାଙ୍କି ଦେଇ ହେବ କିମ୍ବା କମ୍ କ୍ଷତି ପୂରଣରେ ସମସ୍ୟାର ସମାଧାନ କରିହେବ । ତୃତୀୟତଃ ଯେହେତୁ ଜନଗଣ ପରିବେଶ ଉପରେ ସଚେତନ ନୁହନ୍ତି. ତେଣୁ ଏହି କାରଖାନା ସବୁ ପରିବେଶକୁ ଦୂଷିତ କଲେ ମଧ୍ୟ ପରିବେଶକୁ ଶୋଧନ କରିବା ପାଇଁ ସାମ୍ରାଜ୍ୟବାଦୀ-ପୁଂଜିପତିଙ୍କୁ ଅଧିକ ଖର୍ଚ୍ଚ କରିବାକୁ ପଡ଼ିବ ନାହିଁ କିମ୍ବା ପରିବେଶ ଦୂଷିତ ହେଉଛି ବୋଲି ଜନଗଣ ଆନ୍ଦୋଳନ କରିବେ ନାହିଁ । ତେଣୁ ସାମ୍ରାଜ୍ୟବାଦୀ ଶକ୍ତିମାନେ ବିନା ବାଧାବିଘ୍ନରେ ସେମାନଙ୍କର ଯୁଦ୍ଧଶିଳ୍ପ (War-Industry)ରୁ ପ୍ରଚୁର ଅର୍ଥ ଉପାର୍ଜ୍ଜନ କରିପାରିବେ । ତେଣୁ ଆମେରିକା-

ସାମ୍ରାଜ୍ୟବାଦ ପାକିସ୍ତାନରେ ପାରମାଣବିକ ଅସ୍ତ୍ରଶସ୍ତ୍ର କାରଖାନା ବସାଇଲାବେଳେ ସୋଭିଏତ-ସାମ୍ରାଜ୍ୟବାଦ ଭାରତରେ ତଥା ଓଡ଼ିଶା ଭଳି ଅନୁନ୍ନତ ରାଜ୍ୟରେ ବସାଇବାକୁ ଯାଉଛି । ସୁନ୍ଦର ଆନ୍ତର୍ଜାତିକ ଶ୍ରମ-ବିଭାଜନ ଓ ବଜାର-ବିଭାଜନ !

## ଦେଶର ପ୍ରତିରକ୍ଷା କିଏ କରିପାରିବ ?

ନିଶ୍ଚିତ ରୂପେ ବର୍ତ୍ତମାନ ଓ ଭବିଷ୍ୟତରେ ପାଶ୍ଚାତ୍ୟ ସାମ୍ରାଜ୍ୟବାଦୀ ଶକ୍ତି ତଥା ଆମେରିକାସ୍ଥ ସାମ୍ରାଜ୍ୟବାଦ ଭାରତର ମେହନତୀ ଜନଗଣ ଏବଂ ଶ୍ରମିକ ଶ୍ରେଣୀର ଶତ୍ରୁ । ସୋଭିଏତ ସାମ୍ରାଜ୍ୟବାଦ ମଧ୍ୟ ବର୍ତ୍ତମାନ ଓ ଭବିଷ୍ୟତରେ ଭାରତ ତଥା ଓଡ଼ିଶାର ମେହନତୀ ଜନଗଣ ଓ ଶ୍ରମିକ ଶ୍ରେଣୀର କମ୍ ଶତ୍ରୁ ନୁହନ୍ତି । ତେଣୁ ଏହି ଶତ୍ରୁମାନଙ୍କର ତଥା ବର୍ତ୍ତମାନ ଆକ୍ରମଣ ଭବିଷ୍ୟତର ଆକ୍ରମଣ ବିରୁଦ୍ଧରେ କିଏ ମେହନତୀଜନଗଣ ତଥା ଶ୍ରମିକ ଶ୍ରେଣୀଙ୍କୁ ପ୍ରତିରକ୍ଷା କରିପାରିବ ? ସାମ୍ରାଜ୍ୟବାଦୀ ଶକ୍ତିର ଦଲାଲ ସର୍ବଭାରତୀୟ ବୁର୍ଜୁଆ-ଶାସକ ଶ୍ରେଣୀ ଏବଂ ଏମାନଙ୍କ ତେଲ ଓଡ଼ିଶା ସରକାର ? କେବେ ନୁହେଁ । ଜର୍ମାନର ସ୍ୱାଧୀନ-ବୁର୍ଜୁଆ ଶ୍ରେଣୀ ତଥା ଜାପାନର ସ୍ୱାଧୀନ-ବୁର୍ଜୁଆ ଶ୍ରେଣୀ ସ୍ୱୟଂ ବହୁ ଶକ୍ତିଶାଳୀ ସାମ୍ରାଜ୍ୟବାଦୀ ଶକ୍ତି ଥାଇ ମଧ୍ୟ ଦ୍ୱିତୀୟ ବିଶ୍ୱ ଯୁଦ୍ଧରେ ନିଜ ଦେଶର ପ୍ରତିରକ୍ଷା କରି ପାରିଲେ ନାହିଁ । ତ୍ଲର ଭାରତ ସରକାର ଯେ କି ସାମ୍ରାଜ୍ୟବାଦୀ ଶକ୍ତିର ଦାସ ଓ ଦଲାଲ ସେ ପୁଣି ସାମ୍ରାଜ୍ୟବାଦ ବିରୁଦ୍ଧରେ ଭାରତର ପ୍ରତିରକ୍ଷା କରିପାରିବ ? ତେବେ କିଏ ଏ ଦେଶର ଅର୍ଥାତ୍ ମେହନତୀ ଜନଗଣଙ୍କର ପ୍ରତିରକ୍ଷା କରିପାରିବ ?

CPI, CPI (M)ର ନେତୃତ୍ୱ ବିପ୍ଳବର ଇତିହାସକୁ ତାଙ୍କର ବିସ୍ମୃତି ସାଗରରେ ନିକ୍ଷେପ କରିସାରିଛନ୍ତି । ରୁଷର ମେହନତୀ ଜନଗଣ ତଥା ଶ୍ରମିକ ଶ୍ରେଣୀର ସଶସ୍ତ୍ର ଅକ୍ଟୋବର ବିପ୍ଳବ କେବଳ ରୁଷକୁ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ମିଳିତ ଆକ୍ରମଣରୁ ରକ୍ଷାକରି ପାରିଥିଲା । ଚୀନର ସଶସ୍ତ୍ର ନବ-ଗଣତାନ୍ତ୍ରିକ ବିପ୍ଳବ (ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ) ଜାପାନ ସାମ୍ରାଜ୍ୟବାଦର ଆକ୍ରମଣରୁ ତଥା ଅନ୍ୟାନ୍ୟ ସାମ୍ରାଜ୍ୟବାଦର ଆକ୍ରମଣରୁ ତା'ର ଦେଶକୁ ଖାଲି ପ୍ରତିରକ୍ଷା କରି ନ ଥିଲା ବରଂ ସମସ୍ତ ସାମ୍ରାଜ୍ୟବାଦୀ ଶକ୍ତିର ସମସ୍ତ ଶୋଷଣରୁ ଦେଶକୁ ମୁକ୍ତ କରିଥିଲା । ଠିକ୍ ସେହିପରି ଭାରତ ତଥା ଓଡ଼ିଶାର ମେହନତୀ ଜନଗଣ ଓ ଶ୍ରମିକ ଶ୍ରେଣୀକୁ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଶୋଷଣ ଓ ଆକ୍ରମଣରୁ ରକ୍ଷା କରିବାକୁ ଗଲେ ମେହନତୀ ଜନଗଣ ତଥା ଶ୍ରମିକ ଶ୍ରେଣୀର ସଶସ୍ତ୍ର ବିପ୍ଳବ ଦରକାର । କିନ୍ତୁ CPI, CPI (M)ର ନେତୃତ୍ୱ ଆଉ ସଶସ୍ତ୍ର ବିପ୍ଳବର କଥା କହୁ ନାହିଁ । ୬୦ବର୍ଷରୁ ଊର୍ଦ୍ଧ୍ୱ ହେଲା କମ୍ୟୁନିଷ୍ଟ ପାର୍ଟି ଗଠନ ହୋଇଥିଲେ ମଧ୍ୟ ଏମାନେ ଏକ କ୍ଷୁଦ୍ରାପି କ୍ଷୁଦ୍ର ସଶସ୍ତ୍ର-ସର୍ବହରା-ସେନାବାହିନୀ ଗଠନ କରି ପାରି ନାହାନ୍ତି । ଏମାନଙ୍କର କରିବାର

ମଧ୍ୟ ଆବଶ୍ୟକ ନାହିଁ । CPI, CPI (M)ର ନେତୃତ୍ୱ ଅପେକ୍ଷା ଭଲ ଢଙ୍ଗରେ କେବେ ଋଷ ସାମ୍ରାଜ୍ୟବାଦ ହିଁ ଆଜି ସେମାନଙ୍କ ମସ୍ତକରେ ଦିଲ୍ଲୀ ସିଂହାସନର ମୁକୁଟ ପିନ୍ଧାଇ ଚାଲିଥିବେ ।

CPI, CPI (M)ର ନେତୃତ୍ୱ ଲେନିନ୍‌ଙ୍କର ଅନ୍ୟ ଏକ ଉକ୍ତିକୁ ସ୍ମରଣ କରନ୍ତୁ । "ସମାଜବାଦୀ ବିପ୍ଳବକୁ ତ୍ୟାଗକରି ଏବଂ ଏହା ବଦଳରେ ବୁର୍ଜୁଆ-ସଂସ୍କାରବାଦକୁ ଗ୍ରହଣ କରି, ଯେଉଁ ଶ୍ରେଣୀ ସଂଗ୍ରାମ କେତେକ ଏକ ମୁହୂର୍ତ୍ତରେ ଗୃହଯୁଦ୍ଧକୁ ପରିବର୍ତ୍ତିତ ହୋଇଥାଏ ସେହି ଶ୍ରେଣୀ-ସଂଗ୍ରାମକୁ ତ୍ୟାଗ କରି ଏବଂ ଶ୍ରେଣୀ-ସହଯୋଗିତାକୁ ପ୍ରଚାର କରି, ଜନ୍ମଦେଶ ଛଦ୍ମବେଶ ଦ୍ୱାରା ବହୁ ଢଙ୍ଗରେ ଠିକ୍ ହୋଇଥିବା ସମାଜବାଦର ମୌଳିକ ସତ୍ୟ ଯେ ଶ୍ରମିକ ଶ୍ରେଣୀର ଦେଶ ନାହିଁ··· ତାହାକୁ ଅବହେଳା ଓ ପରିତ୍ୟାଗ କରି ଏବଂ 'ପିତୃଭୂମିର ସୁରକ୍ଷା' ତଥା ଦେଶପ୍ରେମିକତାର ଆଳରେ ବୁର୍ଜୁଆ-ଉଗ୍ରଜାତୀୟତାବାଦର ପ୍ରଚାର କରି, ସାମନ୍ତବାଦ-ବିରୋଧୀ ସଂଗ୍ରାମରେ ସମସ୍ତ ଦେଶର ବୁର୍ଜୁଆ ଶ୍ରେଣୀ ପଛରେ ସମସ୍ତ ଦେଶର ସର୍ବହରା ଶ୍ରେଣୀର ବୈପ୍ଳବିକ ଐକ୍ୟର ଅବଶ୍ୟକତାକୁ ସ୍ୱୀକାର କରିବା ବଦଳରେ ସଂକୀର୍ଣ୍ଣ ଭାବପ୍ରବଣତାରେ ସେମାନଙ୍କୁ ଆବଦ୍ଧ ରଖି, ସଂକଟ ସମୟରେ ନୂତନ ବେଆଇନ ସଂଗଠନ ଓ ପ୍ରଚାରର ଯେ ଆବଶ୍ୟକତା ଅଛି ଏହାକୁ ଭୁଲିଯାଇ ବୁର୍ଜୁଆ-ସଂସଦୀୟବାଦ ତଥା ବୁର୍ଜୁଆ-ଆଇନର ଆନୁଷ୍ଠାନିକ ବ୍ୟବହାରକୁ ପୂଜା କରି ସୁବିଧାବାଦୀମାନେ ଦ୍ୱିତୀୟ କମ୍ୟୁନିଷ୍ଟ-ଇଣ୍ଟରନେସନାଲର ପତନ ପାଇଁ ବହୁ ଦିନର କ୍ଷେତ୍ର ପ୍ରସ୍ତୁତ କରି ଆସୁଥିଲେ ।"

"The opportunists have long been preparing the ground for this collapse by denying the socialist revolution and substituting bourgeois reformism in its stead, by rejecting the class struggle with its inevitable conversion at certain moments into civil war, and by preaching class collaboration, by preaching bourgeois chauvinism under the the guise of patriotism and the defence of the father land and ignoring or rejecting the fundamental truth of socialism, long ago set forth in the Communist Manifesto, that the workingmen have no country, by confirming them selves, in the struggle against militarism, to a sentimental, philistine point of view,

instead of recognising the need for a revolutionary war by the proletarians of all Countries against the bourgeoisve of all countries, by making a fetish of the necessary utilisation of bourgeois parliamentarism and bourgeois legality, and forgetting that illegal forms of organisation and propaganda are imperative at times of crisis." ( V. I. Lenin, The war and Russian Social-Democracy, Collected works, Vol. 21, PP. 25-34 ) ]

ଉପରୋକ୍ତ ଲେନିନ୍‌ଙ୍କ ଉକ୍ତିରୁ ଏବେ CPI, CPI (M)ର ନେତୃତ୍ୱ ନିଜକୁ ଅନୁଧ୍ୟାନ କରନ୍ତୁ ଏବଂ ନିଜ ନିଜର ସ୍ଥାନ ନିରୂପଣ କରନ୍ତୁ ଯେ ସେମାନେ ଏବେ ବିପ୍ଳବୀ ସ୍ଥାନରେ ନା ସୁବିଧାବାଦୀ ସ୍ଥାନରେ ରହି ସାରି ବିଶ୍ୱର କମ୍ୟୁନିଷ୍ଟ ଆନ୍ଦୋଳନକୁ କତଳ କରିବା ପାଇଁ ବହୁ ଦିନରୁ କ୍ଷେତ୍ର ପ୍ରସ୍ତୁତ କରି ଆସୁଛନ୍ତି ।

## (ଖ) ଗୋଷ୍ଠୀ ନିରପେକ୍ଷତା—

ଗୋଷ୍ଠୀ ନିରପେକ୍ଷତାମାନେ ଆମକୁ କ'ଣ କୁହାଯାଉଛି ଓ ଏହାର ବାସ୍ତବ ମାନେ କ'ଣ ବୁଝିବାକୁ ହେଲେ ଆମକୁ ଏହି ଆନ୍ଦୋଳନର ଇତିହାସକୁ ସଂକ୍ଷେପରେ ବୁଝିବାକୁ ହେବ । ଏହି ଆନ୍ଦୋଳନ ଆରମ୍ଭ ହୁଏ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେପରେ । ପୂର୍ବରୁ ସୂଚାଇ ଦିଆଯାଇଛି ଯେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପରେ ସାମ୍ରାଜ୍ୟବାଦୀ ଶକ୍ତିମାନେ ନୂତନ ପଦ୍ଧତି ଯୋଗୁଁ ତଥାକଥିତ ସ୍ୱାଧୀନ ଦେଶ ବା ନବ-ଉପନିବେଶିକ ଦେଶମାନଙ୍କରେ ନିଜ ନିଜର ଦଲାଲ ପ୍ରତିଷ୍ଠା କରି ଆଗଠାରୁ ବେଶି ପରିମାଣରେ ଏହି ଦେଶ ଗୁଡ଼ିକୁ ଶୋଷଣ କରିବାକୁ ଲାଗିଗଲେ । ତେବେ ଏହି ଦେଶ ଗୁଡ଼ିକର ସଂସ୍ଥାଙ୍କୁ ସ୍ୱାଧୀନ ସରକାର ବୋଲି ଓ ସାମ୍ରାଜ୍ୟବାଦ ବିରୋଧି ବୋଲି ମେହନତୀ ଜନଗଣଙ୍କ ଆଗରେ ସାର୍ଟିଫିକେଟ ଦେବାକୁ ହେବ । ଏହା କିପରି ସମ୍ଭବ ? ସାମ୍ରାଜ୍ୟବାଦର ଚକ୍ରାନ୍ତରେ ଆନ୍ତର୍ଜାତୀୟ କ୍ଷେତ୍ରରେ ଆରମ୍ଭ ହୁଏ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ । ଏହି ଆନ୍ଦୋଳନ ତଥାକଥିତ ସ୍ୱାଧୀନ ସରକାର ବା ନବ ଉପନିବେଶିକ ଦେଶର ସରକାର ସଭ୍ୟଭୁକ୍ତ ହୁଅନ୍ତି । ଏମାନେ କଣ୍ଠଫଟା ଚିତ୍କାର କରନ୍ତି ଯେ ଏମାନେ ସାମ୍ରାଜ୍ୟବାଦ-ବିରୋଧୀ ଏବଂ କୌଣସି ସାମ୍ରାଜ୍ୟବାଦୀ ଶକ୍ତି କିମ୍ବା ଏହାର ସମାନ୍ତରାଳ ଶକ୍ତି ( ଏବେ ଯାହା ସୋଭିଏତ-ସାମ୍ରାଜ୍ୟବାଦ ଶକ୍ତିରେ ପରିଣତ ହୋଇଛି ) ମାନଙ୍କର ସାମରିକ ମେଣ୍ଟରେ ଗୋଷ୍ଠୀଭୁକ୍ତ ନୁହନ୍ତି । କିନ୍ତୁ ବାସ୍ତବରେ ଏହି ସମସ୍ତ ନବ-ଉପନିବେଶିକ

ଦେଶ ରାଷ୍ଟ୍ରଙ୍କର ସରକାର ପ୍ରତ୍ୟକ୍ଷରେ କିମ୍ବା ପରୋକ୍ଷରେ କୌଣସି ନା କୌଣସି ଗୋଷ୍ଠୀ ଭୁକ୍ତ କିମ୍ବା ବନ୍ଧୁ ଗୋଷ୍ଠୀଭୁକ୍ତ । କୌଣସି ଦେଶ ସାମ୍ରାଜ୍ୟବାଦୀମାନଙ୍କ ଅର୍ଥନୈତିକ, ରାଜନୈତିକ ତଥା ସାମରିକ ପ୍ରଭାବ (sphere of influence)ରୁ ବାହାରିକି ନୁହଁନ୍ତି ।

CPI, CPI (M)ର ନେତୃତ୍ୱ କହେ—"ଗୋଷ୍ଠୀନିରପେକ୍ଷତାର ସାର ମର୍ମ ହେଲା ସାମ୍ରାଜ୍ୟବାଦ ବିରୋଧୀତା । ଭାରତ ଯେଉଁ ଗୋଷ୍ଠୀ ନିରପେକ୍ଷତାର ନେତା ଆମେରିକା ସାମ୍ରାଜ୍ୟବାଦ ସେ ଆନ୍ଦୋଳନ ବିରୁଦ୍ଧରେ ଦଣ୍ଡାୟମାନ" (ସାମ୍ୟବାଦୀ- ୨୪ ଅଗଷ୍ଟ, ୧୯୮୬ ) ।

ଲେଖକ ଭାବିଥିଲେ ଯେ ସାମ୍ରାଜ୍ୟବାଦର ଦଲାଲ ସଂପ୍ରସାରଣବାଦୀ ଶାସକ ଶ୍ରେଣୀ ତା'ର ପଡ଼ୋଶୀ ରାଜ୍ୟମାନଙ୍କ ଦଲାଲମାନଙ୍କ ଉପରେ ସର୍ଦ୍ଦାର ହେବାକୁ ଚାହୁଁଛନ୍ତି । କିନ୍ତୁ ଭାରତ ଯେ ଏହା ମଧ୍ୟରେ ସମସ୍ତ ତୃତୀୟ ବିଶ୍ୱର 'ଗୋଷ୍ଠୀନିରପେକ୍ଷତାର ନେତା' ଅର୍ଥାତ ସମସ୍ତ ତୃତୀୟ ଦଲାଲମାନଙ୍କ ଉପରେ ସର୍ଦ୍ଦାର ହୋଇ ସାରିଲେଣି ଏହା ତାଙ୍କର ବିଶ୍ଳେଷଣର ବାହାରେ ଥିଲା । CPI, CPI (M) ନେତୃତ୍ୱର ବିଶ୍ଳେଷଣରେ ଭାରତ ସରକାର ଅର୍ଥାତ୍ ସଂପ୍ରସାରଣବାଦୀ ଶାସକ ଶ୍ରେଣୀ ସାମ୍ରାଜ୍ୟ-ବାଦ ବିରୋଧୀତାର ନେତା । ଏମାନଙ୍କର ଏହି ବିଶ୍ଳେଷଣ କେତେ ଦୂର ସଠିକ ଆସନ୍ତୁ ସେମାନଙ୍କର ସ୍ୱୀକୃତ ରାଜନୈତିକ ଧାରା (political line )ରୁ ବିଶ୍ଳେଷଣ କରିବା ।

*CPI* ମତରେ ବର୍ତ୍ତମାନ ଭାରତ ବର୍ଷରେ ବିପ୍ଳବର ପର୍ଯ୍ୟାୟ ହେଉଛି ଜାତୀୟ ଗଣତାନ୍ତ୍ରିକ ( National Democratic Revolution )ର ପର୍ଯ୍ୟାୟ । ଅର୍ଥାତ ଭାରତ ବର୍ଷର ପ୍ରଧାନ ଶତ୍ରୁ ହେଉଛି ସାମ୍ରାଜ୍ୟବାଦ । *CPI* (M) ମତରେ ଭାରତ ବର୍ଷରେ ବିପ୍ଳବର ପର୍ଯ୍ୟାୟ ହେଉଛି ଜନ-ଗଣତାନ୍ତ୍ରିକ ବିପ୍ଳବ (People's Democratic Revolution )ର ପର୍ଯ୍ୟାୟ । ଅର୍ଥାତ ଭାରତର ଶତ୍ରୁ ହେଲା ସାମନ୍ତବାଦ ଓ ସାମ୍ରାଜ୍ୟବାଦ । ଏହି ଦୁଇଟି ଶତ୍ରୁ ମଧ୍ୟରୁ କିଏ ପ୍ରଧାନ ଶତ୍ରୁ CPI (M)ର ନେତୃତ୍ୱ କେବେ ଖୋଲି ଖୋଲି କହି ନାହିଁ । କିଏ ପ୍ରଧାନ ଓ କିଏ ଅପ୍ରଧାନ ଶତ୍ରୁ ଏ ବିଷୟ ଏବେ ବାଦ ଦିଆଗଲେ ମଧ୍ୟ ଉଭୟ CPI ଓ CPI (M) ଙ୍କ ମତରେ ଭାରତ ବର୍ଷରେ ସାମ୍ରାଜ୍ୟବାଦ ଏବେ ଶତ୍ରୁ ଭାବେ ଅଛି । ତେବେ ସେମାନେ କିଏ ହୋଇଥିବେ ? ସୋଭିଏତ ସାମ୍ରାଜ୍ୟବାଦୀ ଶକ୍ତିକୁ ତ ଏମାନେ ସମାଜବାଦୀ ବୋଲି କହୁଛନ୍ତି । ତେବେ ସେମାନଙ୍କ ବିଶ୍ଳେଷଣ ଅନୁଯାୟୀ ଏହି ସାମ୍ରାଜ୍ୟବାଦ ପାଶ୍ଚାତ୍ୟ-ସାମ୍ରାଜ୍ୟବାଦୀ ଶକ୍ତି ଓ ଏମାନଙ୍କର ନେତା ଆମେରିକା-ସାମ୍ରାଜ୍ୟବାଦ ଛଡ଼ା ଆଉ କ'ଣ କେହି ହୋଇ

ପାରେ ? ତେବେ ମୋନଙ୍କ ବିଶ୍ଳେଷଣ ଅନୁଯାୟୀ ଭାରତ ବର୍ଷରେ ପାଶ୍ଚାତ୍ୟ-ସାମ୍ରାଜ୍ୟବାଦ ତଥା ଆମେରିକା-ସାମ୍ରାଜ୍ୟବାଦ ନିଷ୍ଟିତ ରୂପେ ଅଛି । ତେବେ 'ସାମ୍ରାଜ୍ୟବାଦ-ବିରୋଧୀ ବୈଦ୍ଧକ ଟେସ୍ତ ଶାସକ ଶ୍ରେଣୀ' ଓ ତାହାର ସରକାର ଶାସନ କ୍ଷମତାରେ ଥାଇ ଥାଇ ଭାରତ ବର୍ଷରେ ପାଶ୍ଚାତ୍ୟ- ସାମ୍ରାଜ୍ୟବାଦ ତଥା ଏହାର ନେତା ଆମେରିକା-ସାମ୍ରାଜ୍ୟବାଦ ଚୁକିଲ୍ କିଭଳି ? ଏହି ପ୍ରଶ୍ନରେ ଆମ୍ଭଙ୍କୁ କେବଳ ଦୁଇଟି ନିମ୍ନଲିଖିତ ସାମ୍ଭବ୍ୟ ଉତ୍ତର ମନକୁ ଆସୁଛି ।

୧) ହୁଏତ କୌଣସି ଏକ ଗୋପନ-ଫାଙ୍କିତ ଭୂତ ଭାରତ ବର୍ଷରେ ସାମ୍ରାଜ୍ୟବାଦକୁ ଚୁକାଉଛି । ସେହି ଭୂତକୁ କେବଳ CPI, CPI (M)ର ନେତୃତ୍ୱ ଚହ୍ନେ କିନ୍ତୁ ଭାରତର ମେହନତୀ ଜନଗଣ ଚହ୍ନେନା ।

କିମ୍ବା (୨) ତୃତୀୟ ବିଶ୍ୱର ଗୋଷ୍ଠୀ ନିରପେକ୍ଷତାର ନେତା ଅର୍ଥାତ ସାମ୍ରାଜ୍ୟ-ବାଦ ବିରୋଧୀତା ନେତା ସର୍ବଭାରତୀୟ ଶାସକ ଶ୍ରେଣୀ ସ୍ୱୟଂ ନିଜ ପେଶାକୁ ବାଦଦେଇ ତୃତୀୟ ବିଶ୍ୱର ଅନ୍ୟାନ୍ୟ ଦେଶରେ ସାମ୍ରାଜ୍ୟବାଦ ବିରୋଧରେ ଶବ୍ଦ ଶୁଣାଇ ହ'ଉବା ସଙ୍ଗେ ସଙ୍ଗେ ନିଜ ଦେଶରେ ସାମ୍ରାଜ୍ୟବାଦକୁ ପୁନର୍ମାଳା ଦେଇ ନିମନ୍ତ୍ରଣ କରୁଛି ।

ଏହା ଛଡା ସବୁ ଆଉ କିଛି ସମ୍ଭାବ୍ୟ ଉତ୍ତର ଅଛି CPI, CPI (M)ର ନେତୃତ୍ୱ ଜନଗଣଙ୍କୁ କହିବେ ।

ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନର ଅସଲ ରୂପ ଆମ୍ଭଙ୍କୁ ଟୋକ ତାହାର ବିଚାରକୁ ପଡ଼ିବ । ଏକ ପକ୍ଷରେ ବିଶ୍ୱ-ସାମ୍ରାଜ୍ୟବାଦୀ ଶକ୍ତିମାନେ 'ଗୋଷ୍ଠୀନିର-ପେକ୍ଷ ଦେଶରେ ଥିବା ସେମାନଙ୍କର ଦଲାଲ-ସରକାରକୁ ସ୍ୱାଧୀନ-ସରକାର ବୋଲି ସାର୍ଟିଫିକେଟ୍ ମେହନତୀ ଜନଗଣଙ୍କ ହସ୍ତରେ ଦେବାର ଯୋଜନା । ଅନ୍ୟ ପକ୍ଷରେ ଏହି 'ଗୋଷ୍ଠୀ ନିରପେକ୍ଷ-ଆନ୍ଦୋଳନ'ରେ ଥିବା ଦେଶମାନଙ୍କରେ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଦଲାଲ ଶାସକ ଶ୍ରେଣୀମାନଙ୍କର ମଧ୍ୟ ଏକ ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ ରହିଛି । ସେମାନେ ସେମାନଙ୍କର ପ୍ରଭୁ ସାମ୍ରାଜ୍ୟବାଦୀ ଶକ୍ତି ଆଗରେ ହାତଯୋଡ଼ି ଅନୁରୋଧ କରୁଛନ୍ତି । "ଆମ୍ଭମାନଙ୍କ ଭଳି ବେଶ୍ୟାକୁ ଆପଣମାନେ ମିଳିତ ଭାବେ ଯାହା ତ ଧର୍ଷଣ କରୁଛନ୍ତି ଆମ୍ଭେ ତାହା ତ ଆମ୍ଭର ପେଟ ପାଇଁ ସହୁଛୁଁ । କିନ୍ତୁ ଆପଣମାନଙ୍କ ମଧ୍ୟରେ ଆମ୍ଭଙ୍କୁ କିଏ ବେଶି ଧର୍ଷଣ କରିବ ସେଥିପାଇଁ ଆପଣମାନେ ଯଦି ଝଗଡ଼ା କରନ୍ତି ତେବେ ଭବିଷ୍ୟତରେ ଆମ୍ଭେ ଅବା କାହାର ହେବୁ ?" ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନର ଏହା ହେଉଛି ବର୍ତ୍ତମାନ ଅସଲ ଚେହେରା । ତୃତୀୟ ବିଶ୍ୱରେ ସାମ୍ରାଜ୍ୟବାଦର ଏହି ଦଲାଲ ଶାସକ

ଶ୍ରେଣୀମାନେ ମେହନତୀ ଜନଗଣ ତଥା ଶ୍ରମିକ ଶ୍ରେଣୀକୁ ସଂଗଠିତ କରି ସାମ୍ରାଜ୍ୟବାଦକୁ ଚିରକୁ ସଂପୂର୍ଣ୍ଣ ମୂଳପୋଛ କରିବା ପରିବର୍ତ୍ତେ ସେମାନଙ୍କୁ (ମେହନତୀ ଜନଗଣଙ୍କୁ) ନିର୍ମମ ଭାବେ ଶୋଷଣ କରି ସାମ୍ରାଜ୍ୟବାଦକୁ ଏହି ଶୋଷଣ ଲବ୍ଧ ଧନରୁ ଏକ ବିରାଟ ଭାଗ (Lion-Share) ଅର୍ପଣ କରି ସାମ୍ରାଜ୍ୟବାଦକୁ ଶକ୍ତଗ୍ରହରେ ମଜବୁତ୍ କରୁଅଛନ୍ତି । ଅଥଚ ବିଶ୍ୱ ସାମ୍ରାଜ୍ୟବାଦର ସମସ୍ତ ଦଲାଲମାନଙ୍କ ମଧ୍ୟରେ ଶ୍ରେଷ୍ଠ ମର୍ଯ୍ୟାଦାକୁ ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀକୁ 'ସାମ୍ରାଜ୍ୟବାଦ-ବିରୋଧୀତାର ନେତା' ବୋଲି CPI, CPI (M)ର ନେତୃତ୍ୱ ଆଜି ସାର୍ଟିଫିକେଟ ଦେଉଛି ! ଧନ୍ୟ ଧନ୍ୟ CPI, CPI (M) ନେତୃତ୍ୱର ମାର୍କସ୍‌ବାଦ-ଲେନିନ୍‌ବାଦ !!!

CPI, CPI (M)ର ନେତୃତ୍ୱ ଭାରତର ଶାସକ ଶ୍ରେଣୀକୁ ଯେଉଁ 'ସାମ୍ରାଜ୍ୟବାଦ-ବିରୋଧୀତାର ନେତା' ସାର୍ଟିଫିକେଟ ଦେଉଛି ଶାସକ ଶ୍ରେଣୀ ମଧ୍ୟ ଏ ସାର୍ଟିଫିକେଟ ନିଜକୁ ଦେଇପାରି ନାହିଁ । ଏକଦା ଶାନ୍ତିନିକେତନରେ (ବୋଧହୁଏ ସୁବର୍ଣ୍ଣ ଜୟନ୍ତୀ ଉତ୍ସବରେ) ଶାସକ ପାର୍ଟିର ପୂର୍ବତନ ସର୍ବୋଚ୍ଚ ନେତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ହିଁ ନିଜେ ସ୍ୱୀକାର କରିଥିଲେ ଯେ ଭାରତ ସ୍ୱାଧୀନତା ପରେ ବି ସାଂସ୍କୃତିକ ସାମ୍ରାଜ୍ୟବାଦ (Cultural Imperialism)ରୁ ମୁକ୍ତ ପାଇ ପାରି ନାହିଁ । ଏକଦା ଶାସକ ପାର୍ଟିର ଉଚ୍ଚନେତା ସ୍ୱର୍ଗତ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ, ଯେ କି ମାର୍କସବାଦୀ-ଲେନିନ୍‌ବାଦୀ ନୁହନ୍ତି, ତାଙ୍କର ଏକ ଏବେକାର ଉକ୍ତି ଏଠାରେ ଉଲ୍ଲେଖ କରିବା ପ୍ରୟୋଜନ ମନେହୁଏ ।

"ମନକୁ ବାଧିବାକୁ ଲେଖା ହୁଏତ କଡ଼ା ହୋଇଯିବ । ମାତ୍ର ଖୋଲଖୋଲି କହିବାକୁ ହେଉଛି ଆମର ପରପୁରୁଷମାନଙ୍କ ପାଇଁ । ....... .. ମୋର ବ୍ୟକ୍ତିଗତ ଅଭିଜ୍ଞତାରୁ ମୁଁ ଜାଣେ କିପରି ଅନ୍ୟ ଦେଶର ଶିକ୍ଷିତ ଶ୍ରେଣୀ ଭାରତର ବ୍ରିଟିଶ୍ ରୀତିକୁ ବର୍ଣ୍ଣନା କରନ୍ତି । ରାଜୀବ ଗାନ୍ଧୀ ଘୃଣା ଆଡେ ଭୁଲି ନିଜ ନାମ କରୁଛନ୍ତି, କିନ୍ତୁ ସେ ସ୍ୱେ ବର୍ତ୍ତମାନ ପୁଣ୍ଡା ବ୍ରିଟିଶ୍ ସାମ୍ରାଜ୍ୟକୁ ସ୍ୱୀକାର କରୁଛନ୍ତି. ଏହାକୁ ମୁହଁରେ ନ କହିଲେ ମଧ୍ୟ ଶିକ୍ଷାନୁଷ୍ଠାନମାନଙ୍କରେ ଛାତ୍ରମାନଙ୍କ ମଧ୍ୟରେ ଆଲୋଚିତ ହୁଏ । ଭାରତର ପ୍ରଚଳିତ ଆଇନ୍ ସବୁ ବ୍ରିଟିଶ୍ ସମୟର । ଶାସନ ମଧ୍ୟ ବ୍ରିଟିଶ ସମୟର । କେବଳ ନିର୍ବାଚନ ପଦ୍ଧତିରେ ଭାରତବାସୀ ଶାସନରେ ଅଛନ୍ତି, ଅନ୍ୟଥା ସବୁ ବ୍ରିଟିଶ । ଆଜି ଏହାକୁ କେବେ ସତ୍ୟ ବୋଲି ନେଉନାହାନ୍ତି, କିନ୍ତୁ ଦିନେ ଏହା ଅସହ୍ୟ ହେବ । ଆଜି ମଧ୍ୟ ଶାସନଟିକୁ କେବେ ନିଜର ବୋଲି ମନେକରୁ ନାହାନ୍ତି । ଏହାର କାରଣ ଶାସନ ଛଦ୍ମ ହୋଇଛି ବ୍ରିଟିଶ ଶାସନ ସହିତ । ଭାରତକୁ ପ୍ରକୃତ ସ୍ୱାଧୀନ କରିବାକୁ ହେଲେ, ଆଉ ଏକ ବିପ୍ଳବ ଆବଶ୍ୟକ, ଏଥିରେ ସନ୍ଦେହ

ନାହିଁ ।" (ଶ୍ରୀ ହରେକୃଷ୍ଣ ମହତାବ, ଗାଁ ମଜଲିସ- ଏବେ ବି ଏ ଦେଶ ପରାଧୀନ ? ପ୍ରଜାତନ୍ତ୍ର- ୨୩-୧୦-୮୬ ) ।

ଶ୍ରୀଯୁକ୍ତ CPI, CPI (M)ର ନେତୃତ୍ୱ ଏବେ ଉପଲବ୍ଧି କରନ୍ତୁ ଯେ ଏପରିକି ବୁର୍ଜୁଆ-ଶାସକ ପାର୍ଟିର ଉଚ୍ଚ ନେତାମାନେ ଆପଣମାନଙ୍କ ଠାରୁ ବହୁ ପରିମାଣରେ ସାଧୁ ଓ ସତ୍ୟ ପରାୟଣ । ଲୋକ ପ୍ରବାଦ ଅଛି ଯେ ଯେତେବେଳେ ଜଣେ ସ୍ୱଧର୍ମ ତ୍ୟାଗ କରେ ସେ ତା'ର ପୂର୍ବ ଧର୍ମ ପ୍ରତି କେତେ ଯେ ନିଷ୍ଠୁର ହୋଇପାରେ ଜଣେ ବିରୋଧୀ-ଧର୍ମୀ ବି ସେ ଧର୍ମ ପ୍ରତି ଏତେ ହୋଇ ପାରେ ନା ।

## (ଗ) ବିଶ୍ୱଶାନ୍ତି —

"ବିଶ୍ୱଶାନ୍ତି"ର ଡାକରା ଆଜି କିଏ ନ ଦେଉଛି ? ପାଶ୍ଚାତ୍ୟ-ସାମ୍ରାଜ୍ୟବାଦୀ ଶକ୍ତିର ନେତା ଆମେରିକା-ସାମ୍ରାଜ୍ୟବାଦ ଠାରୁ ଆରମ୍ଭ କରି ସୋଭିଏତ-ସାମ୍ରାଜ୍ୟବାଦ ପର୍ଯ୍ୟନ୍ତ । ଆଉ ସେମାନଙ୍କର ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀର ଶାସକ ଦଳଠାରୁ ଆରମ୍ଭ କରି ବିରୋଧୀ ଦଳର CPI, CPI (M)ର ନେତୃତ୍ୱ ପର୍ଯ୍ୟନ୍ତ । ଏହି "ବିଶ୍ୱଶାନ୍ତି" ଡାକରାର ଅର୍ଥ ହେଉଛି ବିଶ୍ୱକୁ ଯୁଦ୍ଧ ମୁକ୍ତ କରିବା ଓ ନିରସ୍ତ୍ରୀକରଣ କରିବା ( Disarmament Policy ) । ରୁଷର ବିପ୍ଳବୀ ନେତା ଷ୍ଟାଲିନ୍ କହି ଯାଇଥିଲେ—ବିଶ୍ୱଯୁଦ୍ଧ ଯେତେ ପାଖେଇ ଆସେ ସାମ୍ରାଜ୍ୟବାଦୀ ଦେଶର ତଥା ଅନ୍ୟାନ୍ୟ ଦେଶର ବୁର୍ଜୁଆ-ଶାସକମାନେ 'ବିଶ୍ୱଶାନ୍ତି'ର ସେତେ ଡାକରା ଦିଅନ୍ତି । କିନ୍ତୁ କାର୍ଯ୍ୟରେ ବିଶ୍ୱଯୁଦ୍ଧ ପାଇଁ ସେମାନେ ସେତେ ଯୁଦ୍ଧ ପ୍ରସ୍ତୁତି ଚଲାନ୍ତି । ମେହନତୀ ଜନଗଣ ଆଗରେ "ବିଶ୍ୱଶାନ୍ତି"ର ଛଳନାତ୍ମକ ପରଦା ଟାଙ୍ଗି ତାର ପଛପାଖରେ ବିଶ୍ୱଯୁଦ୍ଧ ପାଇଁ ସମସ୍ତ ପ୍ରକାର ପ୍ରସ୍ତୁତି ଚଳାନ୍ତି । ଭାରତରେ ସାମ୍ରାଜ୍ୟବାଦର ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀ ଓ ତାହାର ଶାସକ ଦଳ ଏଭଳି "ବିଶ୍ୱଶାନ୍ତି"ର ପ୍ରଚାର କରିବା ତ ସ୍ୱାଭାବିକ କଥା । କିନ୍ତୁ CPI ଓ CPI (M)ର ନେତୃତ୍ୱ ତାଙ୍କ ସହିତ କଣ୍ଠ ମିଳାଇ "ବିଶ୍ୱଶାନ୍ତି"ର ଡାକରା ଦେବା ଆଶ୍ଚର୍ଯ୍ୟର ବିଷୟ । ନିକଟରେ ପାଳିତ ହୋଇ ଯାଇଥିବା "ହିରୋସିମା-ନାଗାସାକି-ଦିବସ"ରେ "ବିଶ୍ୱକୁ ଯୁଦ୍ଧ ମୁକ୍ତକର" "ବିଶ୍ୱକୁ ନିରସ୍ତ୍ରୀକରଣ କର" ଇତ୍ୟାଦି ସ୍ଲୋଗାନ ନିଶ୍ଚିତ ରୂପେ CPI, CPI (M)ର ନେତୃତ୍ୱ ଦେଇଥିବେ ତଥା ମେହନତୀ ଜନଗଣଙ୍କର କର୍ଣ୍ଣ-ପଟହ ନିଶ୍ଚିତ ରୂପେ କରିଥିବେ ।

ଅଥଚ ଓଡ଼ିଶାର ବାଲିଆପାଳରେ ହେବାକୁ ଯାଉଥିବା ସୋଭିଏତ୍‌ର କ୍ଷେପଣାସ୍ତ୍ର ଘାଟି କଥା ଜନଗଣ ଉଠାଇଲାବେଳେ ଏମାନଙ୍କର ସ୍ୱର ବଦଳିଯାଏ । ଏମାନେ ଏହି ସୋଭିଏତର ତଥା ଭାରତର ବୁର୍ଜୁଆ ଶ୍ରେଣୀର ଶସ୍ତ୍ରୀକରଣକୁ ସମର୍ଥନ କରନ୍ତି । କାରଣ ଏମାନଙ୍କର ମାର୍କସବାଦୀ ସିଦ୍ଧାନ୍ତ ଯେ, ଆମେରିକାର ପରମାଣୁ

ବୋମା, ନିଶ୍ଚିତ ରୂପେ ବିଶ୍ୱ ଜନଗଣଙ୍କର କ୍ଷତି କରିବ ଏବଂ ବିଶ୍ୱର ପରିବେଶକୁ ଶ୍ମଶାନରେ ପରିଣତ କରିଦେବ । କିନ୍ତୁ ସୋଭିଏତର ପରମାଣୁ ବୋମା ? ଏହା ଦୁଧ, ଘିଅ ଆଦି ପଞ୍ଚାମୃତରେ ତିଆରି । ସୋଭିଏତର ପରମାଣୁ ବୋମା 'ସମାଜବାଦୀ' ହୋଇ ଥିବାରୁ ବିଶ୍ୱରେ ଯାହା କିଛି ମରୁଭୂମୀ ଅଛି ତାହାକୁ ଶସ୍ୟଶ୍ୟାମଳା କରି ଗଢ଼ିଦେବ ଏବଂ ତୃତୀୟ ବିଶ୍ୱରେ କଙ୍କାଳସାର ମେରୁଦଣ୍ଡ ଜନଗଣଙ୍କର ଶରୀରକୁ କନ୍ଦର୍ପ କରି ଗଢ଼ିଦେବ !! ଏପରିକି ତୃତୀୟ ବିଶ୍ୱରେ ଜନଗଣ କବରରୁ ଜୀଅନ୍ତା ଉଠି ବସିବେ !!!

•

ବାଲିଆପାଳରେ ସୋଭିଏତ ସାହାଯ୍ୟରେ ନିର୍ମିତ ହେବାକୁ ଯାଉଥିବା କ୍ଷେପଣାସ୍ତ୍ର ଘାଟିକୁ ଏମାନେ ସମର୍ଥନ କରନ୍ତି ଦେଶର ପ୍ରତିରକ୍ଷା ଦୃଷ୍ଟିରୁ । ଧରି ନିଆଯାଉ ଆମ ଦେଶର ପ୍ରତିରକ୍ଷା ନିଶ୍ଚିତ ରୂପେ ଦରକାର ଏବଂ ଆମେ, ଆମ୍ଭର ଶାସକ-ଶ୍ରେଣୀ ଓ ଏହାର ଶାସକ ପାର୍ଟି ତଥା CPI, CPI (M)ର ନେତୃତ୍ୱ ଇତ୍ୟାଦି ଦେଶ ପ୍ରେମୀ ହୋଇ ଥିବାରୁ ଦେଶର ପ୍ରତିରକ୍ଷା ପାଇଁ ସାମରିକ ଶକ୍ତିର ବର୍ଦ୍ଧନ କଲେ । ପୁନଶ୍ଚ ଏହି ଦେଶର ପ୍ରତିରକ୍ଷାକୁ ଆହୁରି ସୁଦୃଢ଼ କରିବା ପାଇଁ ସାମରିକ ଶକ୍ତିକୁ ପାରମାଣବିକ ଶକ୍ତିରେ ପରିଣତ କଲେ ।

ବର୍ତ୍ତମାନ ପ୍ରଶ୍ନ ଉଠିବ ଯେ ଆମ୍ଭେ ଯଦି ଆମର ଦେଶର ପ୍ରତିରକ୍ଷା ପାଇଁ ଆମେ ସମସ୍ତେ ଦେଶପ୍ରେମୀ ସାମରିକ ଶକ୍ତିକୁ ପାରମାଣବିକ ଶକ୍ତିରେ ପରିଣତ କରିବା ତେବେ ପାକିସ୍ଥାନ ତା'ର ପ୍ରତିରକ୍ଷା ସକାଶେ ତା'ର ସାମରିକ ଶକ୍ତିକୁ ପରମାଣବିକ ଶକ୍ତିରେ ପରିଣତ କରିବା ପାଇଁ ପାକିସ୍ଥାନର ମେରୁଦଣ୍ଡ ଜନଗଣ ତଥା ତା'ର କମ୍ୟୁନିଷ୍ଟ ପାର୍ଟି ପାକିସ୍ଥାନ ସରକାରକୁ ସମର୍ଥନ ଜଣାଇବା ଉଚିତ୍ ନା ଉଚିତ୍ ନୁହେଁ ? ଆମ୍ଭେ ଯଦି ନିରପେକ୍ଷ ହୋଇଥିବା ତେବେ ଖାଲି ପାକିସ୍ଥାନରେ କାହିଁକି ସମଗ୍ର ବିଶ୍ୱରେ ସମସ୍ତ ଦେଶମାନଙ୍କର ପ୍ରତିରକ୍ଷା ପାଇଁ ତାଙ୍କର ସାମରିକ ଶକ୍ତିକୁ ପାରମାଣବିକ ଶକ୍ତିରେ ପରିଣତ କରିବା ସକାଶେ ଆମ୍ଭେ ସମର୍ଥନ ଜଣାଇବା । ତେବେ କ୍ୱହନ୍ତୁ ତ ! ପୃଥିବୀର ସମସ୍ତ ଦେଶ ଯଦି ପରମାଣୁ ବୋମାର ପାହାଡ଼ ସୃଷ୍ଟି କରନ୍ତି ତେବେ ପୃଥିବୀର ଧ୍ୱଂସ ପାଇଁ ଏହା ସାହାଯ୍ୟ କରିବା ନା ପୃଥିବୀକୁ ସମୃଦ୍ଧିଶାଳୀ କରିବାରେ ସାହାଯ୍ୟ କରିବ ? ପରମାଣୁ ଅସ୍ତ୍ରଶସ୍ତ୍ରର ପ୍ରତିଯୋଗିତା ନିଶ୍ଚିତ ରୂପେ ପୃଥିବୀକୁ ଧ୍ୱଂସ ମୁଖକୁ ଟାଣି ନେଉଛି ।

ତେବେ ଏ ପ୍ରତିଯୋଗିତାକୁ କି ଭଳି ଏଡ଼ାଯାଇ ପାରିବ ? ପରମାଣୁ ବୋମା ତିଆରି କରିବାରେ ବୁର୍ଜୁଆ ଶ୍ରେଣୀର ନୀତିକୁ ବିରୋଧ କରି ନା ସମର୍ଥନ କରି ? ନିଶ୍ଚିତ ରୂପେ ବିରୋଧ କରି । ତା'ର ପରୀକ୍ଷାକରଣ ବିରୁଦ୍ଧରେ ବିଶ୍ୱ

ସର୍ବହରା ଶ୍ରେଣୀର ଅସନ୍ତୋଷ, ଅତ୍ୟାଚାରଖାନା ମାନଙ୍କରେ ଜାତି ବର୍ଣ୍ଣନ ଇତ୍ୟାଦି ହିଁ ବିଶ୍ୱକୁ ଯୁଦ୍ଧ ମୁଖରୁ ରକ୍ଷା କରିପାରିବ ।

CPI, CPI (M)ର ନେତୃତ୍ୱ ଯେତେବେଳେ ଭାରତର ପ୍ରତିରକ୍ଷାର ପ୍ରଶ୍ନ ଉଠାଉଛି ସେତେବେଳେ କେଉଁ ଭାରତ କଥା କହୁଛି ପରିଷ୍କାର କରିଦେବା ଉଚିତ। ସାମ୍ରାଜ୍ୟବାଦର ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀର ଭାରତ କଥା କହୁଛି ନା ଭାରତର ଶ୍ରମିକ ଶ୍ରେଣୀ ଓ ମେହନତୀ ଜନଗଣର ଭାରତ କଥା କହୁଛି ? ମାର୍କସବାଦୀ-ଲେନିନବାଦୀ ପାର୍ଟି ଶ୍ରେଣୀ ବିଭକ୍ତ ସମାଜରେ ପ୍ରତ୍ୟେକ ଜାତୀୟତାକୁ ଶ୍ରେଣୀ ଭିତ୍ତିରେ ବିଶ୍ଳେଷଣ କରେ । କୌଣସି ଜାତୀୟତାକୁ ଶ୍ରେଣୀର ଊର୍ଦ୍ଧ୍ୱରେ ରଖେ ନାହିଁ । କେବଳ ସୁବିଧାବାଦୀ, ସଂଶୋଧନବାଦୀ ପାର୍ଟି ଯେ କି ବର୍ତ୍ତମାନ ସମସ୍ତ ପ୍ରକାର ଶୋଷକ ଶ୍ରେଣୀର ଶ୍ରେଷ୍ଠ ପ୍ରତିନିଧି ସେହି କେବଳ ପ୍ରତ୍ୟେକ ଜାତୀୟତାକୁ ଶ୍ରେଣୀର ଊର୍ଦ୍ଧ୍ୱରେ କହେ । ଆମେ ଶ୍ରମିକ ଶ୍ରେଣୀ ନିରସ୍ତ୍ରୀକରଣ କିମ୍ବା ସଶସ୍ତ୍ରୀକରଣକୁ ଶ୍ରେଣୀ ଦୃଷ୍ଟିକୋଣରୁ ଦେଖୁ । ସାମ୍ରାଜ୍ୟବାଦ ଶ୍ରେଣୀର ଓ ଏହାର ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀର ତଥା ଯେ କୌଣସି ଶୋଷକ ଶ୍ରେଣୀର ସଶସ୍ତ୍ରୀକରଣର ଆମେ ବିରୋଧ କରୁ । କାରଣ ଏହି ଶ୍ରେଣୀମାନଙ୍କର ସଶସ୍ତ୍ରୀକରଣ ଖାଲି ଅନ୍ୟ ଦେଶର ଶ୍ରମିକ ଶ୍ରେଣୀ ତଥା ମେହନତୀ ଜନଗଣର ମଥା ଉପରେ ପଡ଼େ ନାହିଁ । ଅଧିକନ୍ତୁ ଏହି ଶ୍ରେଣୀମାନଙ୍କର ସଶସ୍ତ୍ରୀକରଣ ଆମ ନିଜ ଦେଶର ଶ୍ରମିକ ଶ୍ରେଣୀ ତଥା ମେହନତୀ ଜନଗଣଙ୍କର ମଥା ଉପରେ ଆହୁରି ପ୍ରଚଣ୍ଡ ଆକାରରେ ପଡେ । ତେଣୁ ଶୋଷକ ଶ୍ରେଣୀକୁ ଓ ଏହାର ଶାସନ କଳକୁ ଯେତେ ବେଶି ନିରସ୍ତ୍ରୀକରଣ କରାଯାଇପାରେ ସେତେ ଆମ ସର୍ବହରା ଶ୍ରେଣୀ ତଥା ମେହନତୀ ଜନଗଣଙ୍କ ପାଇଁ ମଙ୍ଗଳ ଜନକ । ଯେହେତୁ ବିପ୍ଳବରେ ଆମେ ସଫଳ ହେବା ପାଇଁ ଏହା ପଥ ସୁଗମ କରିଦିଏ । ପୁନଶ୍ଚ, ଆମେ ସର୍ବହରା ଶ୍ରେଣୀ ଓ ମେହନତୀ ଜନଗଣ ନିଜକୁ ସଶସ୍ତ୍ରୀ କରଣ କରିବାକୁ ଚାହୁଁ । ଯାହାକି CPI, CPI (M)ର ନେତୃତ୍ୱ ସୁବିଧାବାଦୀ ଓ ସଂଶୋଧନବାଦୀ ହୋଇଥିବା ଫଳରେ ଭୁଲି ଯାଇଛି ଓ ଭୁଲିଯାଉଛି । ଏହି ସର୍ବହରା ଶ୍ରେଣୀର ସଶସ୍ତ୍ରୀକରଣ ଅର୍ଥାତ ସର୍ବହରା ବିପ୍ଳବ ବିଶ୍ୱର ସାମ୍ରାଜ୍ୟବାଦକୁ ଲୋପ କରି ପାରିବ ଯେଉଁ ସାମ୍ରାଜ୍ୟବାଦ କି ସମସ୍ତ ଯୁଦ୍ଧ ( ନ୍ୟାୟ ଓ ଅନ୍ୟାୟ ଯୁଦ୍ଧ )ର କାରଣ । ଏହି ସମସ୍ତ ଯୁଦ୍ଧର ଲୋପରେ ହିଁ ବିଶ୍ୱଶାନ୍ତି ପ୍ରତିଷ୍ଠା ହୋଇ ପାରିବ ।

## (ଘ) ହିଂସା ଅହିଂସା—

ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟୀ ବିରୁଦ୍ଧରେ ଆନ୍ଦୋଳନ କି ଉପାୟରେ ହେବ ଏଥିପାଇଁ ମଧ୍ୟ ଜନଗଣଙ୍କ ଭିତରେ ବିଭିନ୍ନ ରାଜନୈତିକ ପାର୍ଟି ପ୍ରଚାର

ଲଗାଉଛନ୍ତି । ଜନତା ପାର୍ଟିର ନେତାମାନେ ମହାତ୍ମା ଗାନ୍ଧୀଙ୍କର ପଥ ଅନୁସାରେ ଆନ୍ଦୋଳନକୁ ଅହିଂସା ଓ ସତ୍ୟାଗ୍ରହ ଉପାୟରେ ସବୁ ସମୟ ପାଇଁ ଅଚଳ ରଖି-ବାକୁ ଦୃଢ଼ ପରିକର । ଏଥିପାଇଁ ସେମାନେ ମଧ୍ୟ "ମରଣ ସେନା" ଗଢ଼ି ସାରିଛନ୍ତି । ସେହି 'ମରଣ ସେନା'ରେ କି ୫ ହଜାର ଲୋକ ଶପଥ ନେଇ ଯୋଗଦାନ କରିଛନ୍ତି । ଯଦି ସରକାର ଜନଗଣଙ୍କର ସତ୍ୟାଗ୍ରହକୁ ଅଗ୍ରାହ୍ୟ କରି ନିରସ୍ତ୍ର ଜନଗଣଙ୍କୁ ଗୁଳିମୁଖରେ ଦେଇ କିମ୍ବା ବୁଲଡୋଜର ତଳରେ ଦେଇ ତାଙ୍କର ଭିଟାମାଟିରୁ ଉଚ୍ଛେଦ କରିବାକୁ ଚାହାଁନ୍ତି ତେବେ ଏହି 'ମରଣ ସେନା'ର ଜନଗଣ ସେହି ଗୁଳିମୁଖରେ କିମ୍ବା ବୁଲଡୋଜର ତଳେ ସ୍ୱପ୍ରାଣ ଜୀବନ ବଳି ଦେବେ କିନ୍ତୁ ତାଙ୍କର ଭିଟାମାଟି ଛାଡ଼ିବେ ନାହିଁ । ତାଙ୍କର କବର ଉପରେ ଯଦି ସେନାସ୍ଥ ଘାଟୀ କରାଯାଏ ତେବେ କରାଯାଉ । ଜନଗଣଙ୍କୁ ଯେତେବେଳେ ପ୍ରଶ୍ନ କରାଯାଏ ଯେ ବିନା ଗୁଳିରେ ଓ ବିନା ବୁଲଡୋଜର ପ୍ରୟୋଗରେ ସେମାନଙ୍କୁ ମଧ୍ୟ ବଳପୂର୍ବକ ତାଙ୍କ ଭିଟାମାଟିରୁ ହଟାଇ ନିଆଯାଇପାରେ ସେତେବେଳେ ସେମାନଙ୍କର ଉପାୟ କ'ଣ ହେବ ? ସେମାନେ ନିରୁତ୍ତର ରହନ୍ତି । ଏହି ଅହିଂସାର ପଥକୁ କାହିଁକି ଅନୁସରଣ କରୁଛନ୍ତି ବୋଲି ଯଦି ଜନଗଣଙ୍କୁ ପଚରାଯାଏ ତେବେ ସେମାନେ ଉତ୍ତର ଦିଅନ୍ତି ଯେ ଆମ ଦେଶ ସତ୍ୟ ଓ ଅହିଂସାର ଦେଶ । ମହାତ୍ମା ଗାନ୍ଧୀ ମଧ୍ୟ ଏହି ପଥରେ ବ୍ରିଟିଶ ଭଳି ଶକ୍ତିକୁ ହଟାଇ ପାରିଥିଲେ । ତାଙ୍କୁ ତାଙ୍କର ରାମାୟଣ ଓ ମହାଭାରତ ଏପରିକି ତାଙ୍କର ନିକଟ ଅତୀତର ଇତିହାସକୁ ଯଦି ସ୍ମରଣ କରାଇ ଦିଆଯାଏ ଯେ ସେମାନଙ୍କ ଦେଶର ଅତୀତ ପ୍ରମାଣ କରୁ ନାହିଁ ଯେ ଏ ଦେଶ ଅହିଂସାର ଦେଶ ବୋଲି ସେମାନେ ଆଉ ନିରୁତ୍ତର ରହନ୍ତି ନାହିଁ । ହିଂସାର ଉପାୟ ଗ୍ରହଣ କରିବାକୁ କୁଣ୍ଠାବୋଧ ମଧ୍ୟ କରନ୍ତି ନାହିଁ । ହେଲେ ତାଙ୍କର ନେତା ମାନେ ଯେଉଁଥିରୁ ଏହାକୁ ଶୁଆ ଭଳି ଘନବଢ଼ି ପିଆଇଛନ୍ତି । ତେଣୁ, ତାଙ୍କର ନେତାଙ୍କର କଥାକୁ କାଟିବାକୁ ଅଙ୍ଗ ଅଙ୍ଗ ହୁଅନ୍ତି । ତାଙ୍କୁ ଯେତେବେଳେ ପଚର-ଯାଏ ଯେ ଯେଉଁ ଜନତା ପାର୍ଟି ମହାତ୍ମା ଗାନ୍ଧୀଙ୍କର ଅହିଂସା ପଥରେ ଅନୁପ୍ରା-ଣିତ ସେମାନେ ପୁଣି ତାଙ୍କର ଶାସନ କାଳରେ ଦେଶରେ ପୋଲିସ ଓ ସେନା-ବାହିନୀକୁ ରଖିଥିଲେ କାହିଁକି କିମ୍ବା ସେମାନଙ୍କୁ ଜନଗଣଙ୍କ ବିରୁଦ୍ଧରେ ବ୍ୟବହାର କରୁଥିଲେ କାହିଁକି ? ଜନଗଣ ଉତ୍ତର ଦିଅନ୍ତି ଯେ ଦେଶକୁ ବହିଃଶତ୍ରୁର ଆକ୍ରମଣରୁ ରକ୍ଷା କରିବାକୁ ହେଲେ ସାମରିକ ବାହିନୀର ଦରକାର । ତାଙ୍କୁ ଯେତେବେଳେ ପୁନଶ୍ଚ ପ୍ରଶ୍ନ କରାଯାଏ ଯେ ଯେଉଁ ଅହିଂସା ବଳରେ ମହାତ୍ମା ଗାନ୍ଧୀ ବ୍ରିଟିଶ୍ ଭଳି ପଶୁ ଶକ୍ତିକୁ ହଟାଇ ଥିଲେ ବା ତାଙ୍କର ହୃଦୟ ପରିବର୍ତ୍ତନ କରିଥିଲେ ସେହି ଅହିଂସା ବଳରେ କ'ଣ ସେମାନେ ଅନ୍ୟାନ୍ୟ ବାହାର ଶତ୍ରୁଙ୍କ ହୃଦୟ ପରି-ବର୍ତ୍ତନ କରି ପାରିବେ ନାହିଁ କିମ୍ବା ତାଙ୍କୁ ହଟାଇ ପାରିବେ ନାହିଁ ? ଜନଗଣ ନିରୁତ୍ତର ରହନ୍ତି ।

ବାଲିଆପାଳ ଅଞ୍ଚଳରେ ଜନଗଣଙ୍କର ନେତୃତ୍ୱ ନେଉଥିବା ଏକ 'ନକ୍ସାଲ ପନ୍ଥୀ' ନେତାଙ୍କ ବିରୁଦ୍ଧରେ ଜନୈକ ଜନତା ଦଳର ନେତା କଥା ପ୍ରସଙ୍ଗରେ କହିଥିଲେ ଯେ ସେ କିଭଳି ଲୋକମାନଙ୍କୁ ହିଂସା ମାର୍ଗରେ ଉସ୍କାଉଛନ୍ତି । ଆଉ ସେ ନିଜେ କିଭଳି ଅହିଂସାର ପୂଜାରୀ । ତାଙ୍କୁ ଯେତେବେଳେ ପ୍ରଶ୍ନ କରାଯାଏ ଯେ କ୍ଷେପଣାସ୍ତ୍ର ଘାଟୀ ବାଲିଆପାଳରୁ ସଂପୂର୍ଣ୍ଣ ଉଠିଯିବା ଉପରେ ସେ କ'ଣ ଭାବୁଛନ୍ତି । ସେ କହିଥିଲେ ଯେ ଆମ ଦେଶର ପ୍ରତିରକ୍ଷା ପାଇଁ କ୍ଷେପଣାସ୍ତ୍ର ଘାଟୀ ଦରକାର । କିନ୍ତୁ ବାଲିଆପାଳ ଭଳି ଜନାକୀର୍ଣ୍ଣ ଅଞ୍ଚଳରେ ଏହା ହେବା ଉଚିତ୍ ନୁହେଁ । ତାଙ୍କୁ ପୁନଶ୍ଚ ଯେତେବେଳେ ପ୍ରଶ୍ନ କରାଯାଏ ଯେ ଯଦି ଦେଶର ପ୍ରତିରକ୍ଷା ପାଇଁ କ୍ଷେପଣାସ୍ତ୍ର ଭଳି ମାରାତ୍ମକ ହିଂସ୍ର ଅସ୍ତ୍ର ବିଶ୍ୱର ନିରୀହ ଜନଗଣଙ୍କ ଉପରେ ବ୍ୟବହାର କରାଯାଇ ପାରେ ତେବେ ବାଲିଆପାଳରେ ଜନଗଣ ତାଙ୍କର ନ୍ୟାଯ୍ୟ ପ୍ରତିରକ୍ଷା ପାଇଁ ହିଂସ୍ର ସରକାର ବିରୁଦ୍ଧରେ ଅସ୍ତ୍ର ଚଳାଇବା କାହିଁକି ଅପରାଧ ହେବ ? ଏବଂ ସେହି 'ନକ୍ସାଲ ପନ୍ଥୀ' ନେତାଙ୍କର ଜନଗଣଙ୍କୁ ହିଂସା ପଥରେ ଅନୁପ୍ରାଣିତ କରିବା କାହିଁକି ଅଯୌକ୍ତିକ ହେବ ? ଜନତା ଦଳର ନେତା ଏଥିରେ ନିରୁତ୍ତର ରହିଥିଲେ ।

*

ମାନବ ସମାଜର ଇତିହାସ କହେ ଯେ ଶୋଷକ ଶ୍ରେଣୀ ଏବଂ ତାର ରାଜନୈତିକ ଦଳ ( ସରକାରରେ ଥାଆନ୍ତୁ ବା ବିରୋଧୀ ଦଳ ଭାବେ ଥାଆନ୍ତୁ )ର ସବୁବେଳେ ଦୁଇଟି ଅସ୍ତ୍ର ଥାଏ । ଗୋଟିଏ ହେଲା ହିଂସା ଓ ଅନ୍ୟଟି ହେଲା ଅହିଂସା । ଏକ ପକ୍ଷରେ ଶୋଷକ ଶ୍ରେଣୀ ଓ ତା'ର ଶାସକ ଦଳ ଚିରଦିନ ଧରି ହିଂସାର ଅସ୍ତ୍ର ଧାରଣା କରି ଆସୁଛନ୍ତି ଓ ଏହି ହିଂସା ଅସ୍ତ୍ର ଦ୍ୱାରା ମେହନତୀ ଜନଗଣଙ୍କୁ ଚିରଦିନ ଧରି ଧମକାଇ ରଖି ଆସୁଛନ୍ତି । ଯଦି ଶୋଷିତ ଓ ମେହନତୀ ଜନଗଣ ତାଙ୍କର ନ୍ୟାଯ୍ୟଦାବୀ ପାଇଁ ଆନ୍ଦୋଳନ କରନ୍ତି ତେବେ ଶୋଷକ ଶ୍ରେଣୀ ଓ ଶାସକ ଦଳ ଏହି ନିରୀହ ଜନଗଣଙ୍କର ଆନ୍ଦୋଳନକୁ ଗୁଳିମୁନରେ ନିର୍ମମ ଭାବେ ଦମନ କରନ୍ତି । ଅପର ପକ୍ଷରେ ଜନଗଣଙ୍କର ଆନ୍ଦୋଳନକୁ ସୁବିଧାରେ ଖତମ୍ କରିବା ପାଇଁ ଶୋଷକ ଶ୍ରେଣୀ ଓ ଶାସକ ଦଳ ନିଜ ତରଫରୁ ତାଙ୍କର ଦଲାଲ ( ସେ ନାମକୁ ମାତ୍ର ବିରୋଧୀ ଦଳ ହେଉ କିମ୍ବା ବ୍ୟକ୍ତି ହେଉ)ଙ୍କୁ ସେହି ଆନ୍ଦୋଳନକୁ ନିକ୍ଷେପ କରନ୍ତି । ଶୋଷକ ଶ୍ରେଣୀ ଓ ଶାସକ ଦଳର ଏହି ଦଲାଲ (ପାର୍ଟି କିମ୍ବା ବ୍ୟକ୍ତି) ଜନଗଣଙ୍କର ଆନ୍ଦୋଳନର ନେତୃତ୍ୱ ନିଅନ୍ତି । ଏମାନେ ଶାନ୍ତିପୂର୍ଣ୍ଣ ଉପାୟରେ, ଅହିଂସା ଉପାୟରେ, ସତ୍ୟାଗ୍ରହ ଉପାୟରେ ତଥା କାକୁତି ମିନତି ଦ୍ୱାରା ଆନ୍ଦୋଳନକୁ ଚଳାଇବା ପାଇଁ ଜନଗଣଙ୍କୁ ଶିକ୍ଷା ତଥା ନିର୍ଦ୍ଦେଶ ଦିଅନ୍ତି । ଅର୍ଥାତ ସବୁଠାରୁ ଉତ୍କୃଷ୍ଟ ଉପାୟ ହେଉଛି ଜନଗଣଙ୍କୁ ଏହି ସବୁ ଉପାୟରେ ଘଣ୍ଟା ପେଲାଇବା । ଘଣ୍ଟା ପେଲି ପେଲି ଜନଗଣ ଥକି ଗଲେ, ସେମାନଙ୍କର ସମସ୍ତ ଉତ୍ସାହ ଓ ଉଦ୍ଦୀପନା ମରିଗଲେ, ସେମାନଙ୍କର ଆଶା ଓ ଭରସା ତୁଟିଗଲେ

ଶେଷରେ ଏହି ଦଳର ନେତୃତ୍ୱ ଜନଗଣଙ୍କୁ ନୂତନ ଢଗ ଦେଖାନ୍ତି । ସେ କହୁଛନ୍ତି "କ'ଣ କରିବା ? ସରକାର ତ ତାଙ୍କ କଥାରେ ଅଟଳ । ଆମର ବା କେତେ ବଳ ତାଙ୍କ ବିରୁଦ୍ଧରେ ଯିବା ପାଇଁ ? ସରକାର ଯାହା କହୁଛନ୍ତି ମାନିନେବା ଓ ଯାହା ଦେଉଛନ୍ତି ନେଇ ନେବା । ନ ନେଲେ, ସରପୋଷରୁ ଯାହା ମିଳୁଛି ସେତକ ବି ହରାଇବା ।" ଶେଷରେ ଜନଗଣ ହାତ ମୁଣ୍ଡ ଆଉଁସି ଭାଗ୍ୟକୁ ଆଦର ମଥାପାତି ସହି ସହି ନିଅନ୍ତି ।

ଏହି ସମସ୍ତ ଶାନ୍ତିପୂର୍ଣ୍ଣ ବିରୋଧ ତଥା ଅହିଂସା ମାର୍ଗରେ ବିରୋଧ ଛଳନାତ୍ମକ ବିରୋଧ ଛଡ଼ା କିଛି ନୁହେଁ । ଶୋଷକ ଶ୍ରେଣୀ ଓ ତା'ର ଶାସକ ସରକାରଙ୍କର ଏହା ହେଉଛି ଦମନ ନୀତିର ଅନ୍ୟପାଖ । ଏହି ଶାନ୍ତିପୂର୍ଣ୍ଣ ବିରୋଧ ଶୋଷକ ଶ୍ରେଣୀ ଓ ଶାସକ ଦଳକୁ ବହୁ ସାହାଯ୍ୟ କରେ । ଶୋଷକ ଶ୍ରେଣୀ ଓ ଶାସକ ଦଳ ଏହି ବିରୋଧ ଦ୍ୱାରା କମ ଖର୍ଚ୍ଚରେ ବେଶି କାମ ଉଠାଇ ନିଅନ୍ତି ।

ଏକ ଜିଲ୍ଲା ସ୍ତରୀୟ ଆଲୋଚନା ଚକ୍ରରେ ଜଣେ ଯୁବକ ଏକ ବୃଦ୍ଧ ନେତା କିଛି କିଛି କଥା ପଚାରିଲେ : "ଜାନକୀ ସରକାର କହୁଛନ୍ତି ଯେ ଭାରତ ସରକାର ତ ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟି ପାଇଁ ନିଷ୍ପତ୍ତି ନେଇ ସାରିଛନ୍ତି । ଏହି ନିଷ୍ପତ୍ତି କିପରି ବଦଳା ଯିବ ? ପଞ୍ଜାବ ପାଇଁ ସରକାର ଦିନକୁ ତିନିଥର ନିଷ୍ପତ୍ତି ବଦଳାଉଛନ୍ତି । ରାଜୀବ ଗାନ୍ଧୀଙ୍କର ଓଡ଼ିଶା ପାଇଁ ନିଷ୍ପତ୍ତି କ'ଣ ବେଦର ଗାର ?" ନେତା ମହାଶୟ ବୋଧହୁଏ ନିଜକୁ କେବେ ପ୍ରଶ୍ନ ପଚାରି ନାହାନ୍ତି ଯେ ପଞ୍ଜାବ ପାଇଁ କାହିଁକି ଦିନକୁ ତିନି ତିନି ଥର ନିଷ୍ପତ୍ତି ବଦଳୁଛି ? ଯଦି ପଚାରି ଥାଆନ୍ତେ, ଜଣାନାହିଁ, ସେ ଏହି ଉତ୍ତର ପାଇଥାଆନ୍ତେ କି ନାହିଁ । "ପଞ୍ଜାବ ଆନ୍ଦୋଳନର ନେତୃତ୍ୱ ମାଇଆ ନୁହେଁ ।"

ପଶ୍ଚିମ ୟୁରୋପରେ କ୍ଷେପଣାସ୍ତ୍ର ଘାଟି ବିରୋଧୀ ଆନ୍ଦୋଳନର ଏକ ଜ୍ୱଳନ୍ତ ଉଦାହରଣ ଏଠାରେ ଦିଆଯାଇପାରେ । କାରଣ, ସେହି ଆନ୍ଦୋଳନରେ କେଉଁ ରାଜନୈତିକ ଦଳ କିଭଳି ଭୂମିକା ଗ୍ରହଣ କରିଥିଲେ ଓଡ଼ିଶାର ଜନଗଣ ତାହା ଜାଣିଲେ ସେମାନେ ସେମାନଙ୍କର ରାଜନୈତିକ ଦଳର ଅସଲ ଚେହେରା କିଛିଟା ଜାଣି ପାରିବେ ।

## ପଶ୍ଚିମ ଜର୍ମାନରେ ଉତ୍ତପ୍ତ ହେମନ୍ତ (Hot Autumn)

କ୍ୟୁବାରେ କ୍ଷେପଣାସ୍ତ୍ର ଘାଟି ଗଠନ ସଂପର୍କରେ ଯେଉଁ ସଙ୍କଟ ଉପୁଜିଥିଲା ତାହାର ସମାଧାନ ସ୍ୱରୂପ ତୁର୍କିରୁ ଆମେରିକା ତା'ର ଜୁପିଟର କ୍ଷେପଣାସ୍ତ୍ର ମାନ ଉଠାଇ ନେଇଥିଲା । କିନ୍ତୁ ସୋଭିଏତ ୟୁନିୟନକୁ ଆଘାତ ଦେଲାଭଳି କ୍ଷେପଣାସ୍ତ୍ର ୟୁରୋପରେ ବସାଇବା ପାଇଁ ଆମେରିକା ପୁନଶ୍ଚ ସ୍ଥିର କଲା । ଠିକ ହେଲା ଯେ,

ପ୍ରଥମେ ପଶ୍ଚିମ ଜର୍ମାନରେ ଆମେରିକା ନିର୍ମିତ ନୂଆ ପାରସିଂ- ୨ ଏବଂ କ୍ରୁଜ୍ କ୍ଷେପ- ଣାସ୍ତ୍ର (Pershing-II and Cruise Missiles) ଘାଟୀ ବସାଯିବ ଏବଂ ପରେ ଅନ୍ୟାନ୍ୟ NATO ( North Atlantic Treaty organisation ) ଦେଶମାନଙ୍କରେ ବସାଯିବ ।

NATO ଦେଶମାନଙ୍କରେ ଶାସକମାନେ ଚଡ଼ାକଣ୍ଠରେ ଅନବରତ କହୁଥାନ୍ତି ଯେ ସୋଭିଏତ ୟୁନିୟନ SS- 20 କ୍ଷେପଣାସ୍ତ୍ର ଘାଟୀ ବସାଇ ଯେଉଁ ଭୟ ପ୍ରଦର୍ଶନ କରୁଛନ୍ତି ପାରସିଂ ଏବଂ କ୍ରୁଜ-କ୍ଷେପଣାସ୍ତ୍ର ହେଉଛି ତା'ର ଉତ୍ତର । ତେଣୁ ଏହି କ୍ଷେପଣାସ୍ତ୍ର ଅସ୍ତ୍ର-ପ୍ରତିଯୋଗିତାକୁ ବର୍ଦ୍ଧନ କରୁ ନାହିଁ । ତାଙ୍କର ସାମରିକ ମହଲ ଏହି କ୍ଷେପଣାସ୍ତ୍ର କାର୍ଯ୍ୟକ୍ରମକୁ ଅଧୁନିକୀକରଣର କର୍ମସୂଚୀର ଏକ ଅଂଶ ବୋଲି ଘୋଷଣା କରି ଆସୁଛି ।

ତୃତୀୟ ବିଶ୍ୱଯୁଦ୍ଧ ପାଇଁ ପାଶ୍ଚାତ୍ୟ ସାମ୍ରାଜ୍ୟବାଦର NATO-Bloc ଏବଂ ସୋଭିଏତ ସାମ୍ରାଜ୍ୟବାଦର WARSA-Bloc ମଧ୍ୟରେ ଯେଉଁ ପ୍ରତିଦ୍ୱନ୍ଦ୍ୱିତା ସରଗରମ ଭାବେ ଚାଲିଛି, ଏହି ଯୁଦ୍ଧ ପ୍ରସ୍ତୁତି ବିରୁଦ୍ଧରେ ୧୯୭୯ ମସିହା ଠାରୁ ଅସଂଖ୍ୟ ଗଣବିକ୍ଷୋଭ ୟୁରୋପରେ ହୋଇ ଆସୁଛି । ଫଳରେ ଜର୍ମାନୀର ଯୁଦ୍ଧ-ବିରୋଧୀ ଶକ୍ତି ପଶ୍ଚିମ ଜର୍ମାନ-ପୁଂଜିପତି ଶ୍ରେଣୀର ତୋଡ଼ାଣିଆ ନୀତି ବିରୁଦ୍ଧରେ ଘନ ଘନ ଆନ୍ଦୋଳନ ଓ ବିକ୍ଷୋଭ କରି ଆସୁଛି ।

ପଶ୍ଚିମ ଜର୍ମାନର ସରକାର ଏହି ଆମେରିକାର କ୍ଷେପଣାସ୍ତ୍ର ଘାଟୀ ନିଜ ଦେଶରେ ବସାଇବା ସଂପର୍କରେ ୧୯୮୩ ମସିହା ନଭେମ୍ବର ୨୧ ତାରିଖ ଦିନ ପାର୍ଲିଆମେଣ୍ଟରେ ସ୍ୱୀକୃତ ହେବା ପାଇଁ ଚାହିଁଲେ । ଏହାକୁ କେନ୍ଦ୍ର କରି ପଶ୍ଚିମ ଜର୍ମାନରେ କିପରି ଦୁର୍ଦ୍ଦାନ୍ତ ଗଣ ଅନ୍ଦୋଳନ ସୃଷ୍ଟି ହେଲା ଏବଂ ଏହି ଗଣ ଆନ୍ଦୋ- ଳନରେ ବିଭିନ୍ନ ବୈପ୍ଳବିକ ଦଳ ଓ ସଂଗଠନର କି କି ଭୂମିକା ଥିଲା ତାହା ଓଡ଼ିଶାବାସୀ ବିଶେଷକରି ଶୋଷିତ ଅଞ୍ଚଳର ଜନତାର ଜାଣିବା ଆବଶ୍ୟକ ।

**କ୍ଷେପଣାସ୍ତ୍ର ବିରୋଧୀ ସମନ୍ୱୟ ସମିତି** [ ଜର୍ମାନୀରେ ସଂକ୍ଷେପରେ କୁହାଯାଏ K A.] :

ବିଭିନ୍ନ ପ୍ରଦର୍ଶିତ କ୍ଷେପଣାସ୍ତ୍ର-ବିରୋଧୀ ସଂଗଠନର ଏକ ସମନ୍ୱୟ ସମିତି ଗଠନ ହୋଇଥିଲା । ଏହି ସଂଗଠନ ଗୁଡ଼ିକ ହେଉଛି ସରକାରୀ ସ୍ୱୀକୃତ ଏବଂ ଶାନ୍ତି ଆନ୍ଦୋଳନକାରୀ । ଏମାନଙ୍କ ମଧ୍ୟରେ ବିଭିନ୍ନ ପ୍ରକାରର ଧର୍ମ ସମ୍ପ୍ରଦାୟ, ଶାନ୍ତିକାମୀ ( Pacifist ) ଏବଂ ପରିବେଶବାଦୀ (Environmentalist )

ସଂଗଠନ ଅନ୍ତର୍ଭୁକ୍ତ । ସେମାନଙ୍କର ଅଧିକାଂଶ ନେତା କର୍ମୀଙ୍କର ସୋସିଅଲିଷ୍ଟ ପାର୍ଟି (DSP) ଓ ମସ୍କୋପନ୍ଥୀ ଜର୍ମାନ କମ୍ୟୁନିଷ୍ଟ ପାର୍ଟି (DKP)ର ସଭ୍ୟ ଥିଲେ। ଏହି ପାର୍ଟି ଦ୍ୱୟର ସମର୍ଥକ। ଏହି ସମିତିରେ Green Party ସଭ୍ୟ-ମାନେ ମଧ୍ୟ ଥିଲେ। ରାଜନୈତିକ ଏବଂ ରଣକୌଶଳ ଦିଗରୁ ଏମାନଙ୍କ ମଧ୍ୟରୁ ଅଧିକାଂଶ ଆନ୍ଦୋଳନକୁ ଅହିଂସା ଏବଂ ପ୍ରତିରୋଧ-ବନ୍ଧନ କରି ରଖିବାକୁ ଦୃଢ଼ ପଣକଲେ ।

ଏହି ଦୃଷ୍ଟିକୋଣ ନେଇ ଏହି ଦଳ ଶକ୍ତିଶାଳୀ ଜନମତ ସୃଷ୍ଟି କଲେ । ଆମେରିକା ଦ୍ୱାରା ନିର୍ମିତ ଘାଟୀ ଛକର ଚତୁର ଘେରାଗଲା । ଆନ୍ଦୋଳନକାରୀ ମାନଙ୍କୁ ଅହିଂସାରେ ତାଲିମ ଦିଆଯିବା ପାଇଁ ପ୍ରଶିକ୍ଷଣୀମାନ ଖୋଲାଗଲା । ବିଭିନ୍ନ ସରକାରୀ ସ୍ୱୀକୃତ ନେତାମାନେ ("Official" Leaders) ମହାତ୍ମା ଗାନ୍ଧୀ ଓ ମାର୍ଟିନ ଲୁଥର କିଂଙ୍କ ଆଦର୍ଶ ଓ ଶୈଳୀରେ ଅହିଂସ ଅମାନ୍ୟ ଆନ୍ଦୋଳନ ଚାଲୁ ରଖିବା ପାଇଁ ଘୋଷଣା କଲେ । କେତେକ ଏପରି କି କହିଲେ ଯେ ସରକାରୀ କଳକୁ ଅଚଳ କରିବା ପର୍ଯ୍ୟନ୍ତ ଆନ୍ଦୋଳନକୁ ଚାଲୁ ରଖିବା ପାଇଁ ।

ଯଦିଓ ସରକାର ଜାଣିଥିଲେ ଯେ ସରକାରୀ ସ୍ୱୀକୃତ ନେତାମାନଙ୍କର ଯୋଜନା ସରକାରକୁ ଅଚଳ କରିବା ପର୍ଯ୍ୟନ୍ତ ଯିବ ନାହିଁ ବୋଲି ତଥାପି ଜନଗଣଙ୍କର ଯୁଦ୍ଧ ବିରୋଧୀ ଆନ୍ଦୋଳନ କୌଣସି ମୁହୂର୍ତ୍ତରେ ଆୟତ୍ତାଧୀନର ବାହାରକୁ ଚାଲିଯିବାର ସମ୍ଭାବନା ଥିବା ବୋଲି ମନେକରି ବାସ୍ତବରେ ଏହା ଅନେକ ଚିନ୍ତିତ ଥିଲା ।

ଆମେରିକାର କ୍ଷେପଣାସ୍ତ୍ରକୁ ଜର୍ମାନରେ ବସାଇବାକୁ ବାଧାଦେବା ପାଇଁ ଏହି ଆନ୍ଦୋଳନକାରୀ ମାନଙ୍କର ଯୋଜନା କେବଳ ପ୍ରତୀକ ଧର୍ମୀ ( Symbolic ) ଥିଲା । ଅର୍ଥାତ ଛଳନାତ୍ମକ ଥିଲା । ତେଣୁ ଯଦିଓ କ୍ଷେପଣାସ୍ତ୍ର ବସାଇବା କାର୍ଯ୍ୟକୁ ଡିସେମ୍ବର ମାସର ଅଧାଅଧି ବେଳକୁ କରିବାର ଥିଲା । କିନ୍ତୁ ଏମାନଙ୍କର ଆନ୍ଦୋଳନ ଅକ୍ଟୋବର ମଧ୍ୟ ବେଳକୁ ଆରମ୍ଭ କରିଦେଲେ ।

ଏହି ଯୋଜନା ଅନୁସାରେ କେତେକ ସରକାରୀ-ସ୍ୱୀକୃତ ନେତାମାନେ ସରକାର ସହିତ କଥାବାର୍ତ୍ତା ଆରମ୍ଭ କରିଦେଲେ । ସରକାରୀ ସ୍ୱୀକୃତ ପ୍ରତୀକ ଧର୍ମୀ କାର୍ଯ୍ୟକ୍ରମ ସଂପର୍କରେ ଏହି ନେତାମାନେ ସରକାରଙ୍କୁ ପ୍ରତିଶ୍ରୁତି ଦେଲେ ଯେ ଏହି ଆନ୍ଦୋଳନ ଦୃଢ଼ ପ୍ରତିରୋଧ କରିବ ନାହିଁ ଏବଂ ଅହିଂସା ଉପାୟରେ ଚାଲିବ । ଏପରିକି ସେମାନେ ରାଜି ହୋଇଥିଲେ ଯେ "ଗଣ୍ଡଗୋଳକାରୀ"; "ହିଂସାପନ୍ଥୀ" (ସନ୍ତ୍ରାସବାଦୀ) ଆନ୍ଦୋଳନକାରୀଙ୍କୁ ଏକଘରିଆ କରିବା ପାଇଁ ଏବଂ ଏପରି କି ସେମାନଙ୍କୁ ଗିରଫ କରିବା ପାଇଁ ପୋଲିସକୁ ଚିହ୍ନାଇଦେବେ ଓ ସାହାଯ୍ୟ କରିବେ ବୋଲି ।

ଏହି ସାଧାରଣ ଯୋଜନାକୁ ଯଦିଓ ବିଭିନ୍ନ ବିରୋଧୀ ରାଜନୈତିକ ଦଳ ମାନିନେଲେ ତଥାପି ସେମାନେ ଏକ ଶ୍ରେଣୀ ସ୍ୱାର୍ଥ କିମ୍ବା ଶ୍ରେଣୀ ଦୃଷ୍ଟିକୋଣକୁ ପରିତ୍ୟାଗ କରୁ ନ ଥିଲେ । Green Partyର ଅଧିକାଂଶ ସଭ୍ୟ ବାସ୍ତବରେ କ୍ଷେପଣାସ୍ତ୍ର ଘାଟୀ ବିରୋଧୀ ଥିଲେ । କିନ୍ତୁ ସେମାନେ ମୌଳିକ ଭାବେ ସାମ୍ରାଜ୍ୟବାଦ ବ୍ୟବସ୍ଥା ବିରୁଦ୍ଧରେ ନ ଥିଲେ, ଯେଉଁ ସାମ୍ରାଜ୍ୟବାଦ ବ୍ୟବସ୍ଥା ଏ କ୍ଷେପଣାସ୍ତ୍ର ମାନ ତିଆରି କରୁଛି । ସେମାନେ ବିଶ୍ୱଯୁଦ୍ଧକୁ ଭୟ କରୁଥିଲେ । ପୁନଶ୍ଚ ସେ ଯୁଦ୍ଧକୁ ସୃଷ୍ଟି କରୁଥିବା ସାମ୍ରାଜ୍ୟବାଦ ବିରୁଦ୍ଧରେ ବ୍ୟାପକ ଗଣବିଦ୍ରୋହକୁ ମଧ୍ୟ ଭୟ କରୁଥିଲେ । ମୁଖ୍ୟତଃ ଏମାନଙ୍କର ଲକ୍ଷ ଥିଲା ଯେ ଏହି ଆନ୍ଦୋଳନର ପୃଷ୍ଠପୋଷକ ଭାବେ ରହି ଆସନ୍ତା ନିର୍ବାଚନରେ ସଫଳ ହେବା ପାଇଁ ଏବଂ ଯଦି ସେମାନେ କ୍ଷମତାକୁ ଆସନ୍ତି ତେବେ ପଶ୍ଚିମ ଜର୍ମାନୀକୁ NATO ଗୋଷ୍ଠୀରୁ ବାହାରକୁ କରି ଆଣିବେ କିମ୍ବା ଫ୍ରାନ୍ସର De-Gaulle ଙ୍କ ଭଳି ପଶ୍ଚିମ ଜର୍ମାନ ଓ ପାଶ୍ଚାତ୍ୟ ଯୁଦ୍ଧଗୋଷ୍ଠୀ ମଧ୍ୟରେ ସଂପର୍କରେ ପୁନର୍ସଜ୍ଞା ନିରୂପଣ କରିବେ ।

ଏହି ସାଧାରଣ ଯୋଜନାରେ DSP ଓ DKP ପାର୍ଟି ମଧ୍ୟରେ ଏକ ଅଦ୍ଭୁତ ଧରଣର ବୁଝାମଣା ଥିଲା । ଏମାନେ ଉଭୟ ଆସନ୍ତା ନିର୍ବାଚନରେ ସଫଳ ହେବାର ଆଶାରଖି ଆନ୍ଦୋଳନ କରୁଥିଲେ । ଏହି ଉଭୟଙ୍କ ମଧ୍ୟରେ ସନ୍ଧିଥିଲା ଯେ ଏହି ଆନ୍ଦୋଳନ କେବଳ ଜର୍ମାନରେ ବସୁଥିବା କ୍ଷେପଣାସ୍ତ୍ର ଘାଟି ବିରୁଦ୍ଧରେ ସୀମିତ ରହିବ । DSP ପୂର୍ବ ୟୁରୋପରେ ସୋଭିଏତର କ୍ଷେପଣାସ୍ତ୍ର ଘାଟୀ ବିରୁଦ୍ଧରେ ଯେଉଁଭଳି ପ୍ରଶ୍ନ ଉଠାଇବ ନାହିଁ ଠିକ୍ ସେହିଭଳି NATO-ଯୁଦ୍ଧଗୋଷ୍ଠୀ ସହିତ ପଶ୍ଚିମ ଜର୍ମାନର ସଂପର୍କ ଉପରେ DKP ମଧ୍ୟ ପ୍ରଶ୍ନ ଉଠାଇବ ନାହିଁ ।

[ ଉଲ୍ଲେଖଯୋଗ୍ୟ ବିଷୟ ଯେ ୧୯୮୨ରେ ସରକାରକୁ ପ୍ରତିନିଧିତ୍ୱ କରୁଥିବା ସମସ୍ତ ପାର୍ଟି ( Green ଏହା ମଧ୍ୟରେ ସେତେବେଳକୁ ପ୍ରବେଶ କରି ନ ଥିଲା ) କ୍ଷେପଣାସ୍ତ୍ର ସପକ୍ଷରେ ଥିଲେ । DSP ସରକାରରୁ ବାହାରି ଆସିଲା ପରେ ଯାଇ କ୍ଷେପଣାସ୍ତ୍ର ସଂପର୍କରେ ଛଳନାତ୍ମକ ଭାବେ ଏପଟ ସେପଟ ହେଲା । ]

## ପଶ୍ଚିମ ଜର୍ମାନ ସରକାରଙ୍କ ପକ୍ଷରୁ ଘେରାଓ କରଣ ଓ ଦମନ

ପଶ୍ଚିମ ଜର୍ମାନ ସରକାର ଭଲ ଭାବରେ ଜାଣିଥିଲେ ଯେ କ୍ଷେପଣାସ୍ତ୍ରକୁ କେନ୍ଦ୍ର କରି ରାଜନୈତିକ ସଚେତନତାର ସ୍ଫୁଲିଙ୍ଗ ଜଳି ଉଠିବ ଏବଂ ଏହା ଏକ ଦାବାନଳରେ ପରିଣତ ହେବ । ତେଣୁ ସେମାନେ ଘେରାଓକରଣ ଓ ଦମନନୀତିର ଉପାୟ ସ୍ଥିର କଲେ । ଘେରାଓର ଅର୍ଥ ହେଲା ଯେ ରଣକୌଶଳ ଭାବେ (Tactically) ସମସ୍ତ ଗଣ ଆନ୍ଦୋଳନକୁ ସରକାରକୁ ସୁହାଇଲା ଭଳି ଅବସ୍ଥାରେ

କରିବେ । ଅର୍ଥାତ୍, ଆନ୍ଦୋଳନ ମୁଖ୍ୟତଃ ଅହିଂସା ପଦ୍ଧତିରେ ସୀମିତ ରହିବ । ଦ୍ୱିତୀୟ ରାଜନୈତିକ ଭାବେ, ଜନଗଣଙ୍କୁ ଏପର୍ଯ୍ୟନ୍ତ ଶିକ୍ଷା ଯାଇଥିବା ସାମ୍ରାଜ୍ୟବାଦର ମୂଳଭିତ୍ତିକୁ ଦୋହଲା ଏହି ଆନ୍ଦୋଳନ ଚେଷ୍ଟା ନ କରେ । ଅର୍ଥାତ, ସାମ୍ରାଜ୍ୟବାଦର ହିଂସ୍ର ମୁକ୍ତଖୋର ନୀତିକୁ ପ୍ରକଟ ନ କରେ । ଏଥିପାଇଁ ସରକାର ସ୍ୱୀକୃତ ଏବଂ ସରକାରଙ୍କୁ ସୁହାଁଇଲା ଭଳି ଆନ୍ଦୋଳନକାରୀ ନେତାଙ୍କୁ ଖବରକାଗଜ, ରେଡ଼ିଓ ଓ ଟେଲିଭିଜନ ମାନଙ୍କରେ ପ୍ରାଧାନ୍ୟ ଦିଆଗଲା । ତେଣୁ ସମସ୍ତ ରାଜନୈତିକ ପାର୍ଟିର ନେତାମାନେ "ଶାନ୍ତି" ପାଇଁ 'ନଗରୀକରଣ'ର ଆବଶ୍ୟକତା ପାଇଁ ଲମ୍ବା ବକ୍ତୃତା ଭାଷଣ ଅନବରତ ଦେବାକୁ ଆରମ୍ଭ କଲେ ଏବଂ ଠିକ୍ କରିଗଲେ ଯେ ଶାସକ ଶ୍ରେଣୀ ହିଁ ଅନେକ ନେଇଥିବା ବନ୍ଦୋବସ୍ତି ଅନୁସାରେ ଏବେ ସରକାରୀ ମହଲରେ, ସରକାରୀ ଅନୁଷ୍ଠାନ ମାନଙ୍କରେ "ଗଣତନ୍ତ୍ରକୁ ଖାପ୍ ଖାଉ ଥିବାଭଳି କ୍ଷେପଣାସ୍ତ୍ର ସଂପର୍କରେ ଆଲୋଚନା, ତର୍କ ବିତର୍କ ଏବଂ ଏପରିକି ସାମାନ୍ୟ ବିରୋଧ ସ୍ୱୀକୃତ ଏବଂ ପରିଶେଷରେ ଗଣତନ୍ତ୍ର ଅନୁଯାୟୀ ଗଣତାନ୍ତ୍ରିକ ଭାବେ ନିର୍ବାଚିତ ସରକାରର ନିଷ୍ପତ୍ତି କାର୍ଯ୍ୟକାରୀ ହେବ । ଅର୍ଥାତ, କ୍ଷେପଣାସ୍ତ୍ର ବସାଯିବ ।

ଜର୍ମାନ ସରକାରର ଦମନ ପ୍ରକ୍ରିୟା ମଧ୍ୟ ସ୍ପଷ୍ଟ ଥିଲା । ବିକ୍ଷୋଭ କରିବାର ନିୟମକୁ ଅଣାଯାଇଥିଲା । ସରକାରୀ ସ୍ୱୀକୃତ ନେତାମାନଙ୍କ ସହିତ ମିଳିତ ଯୋଜନା ଦେବା ସଙ୍ଗେ ସଙ୍ଗେ ପୋଲିସମାନଙ୍କୁ କଡ଼ାକଡ଼ି ଭାବେ ମୁତୟନ କରାଗଲା । ଏକ ନେତୃସ୍ଥାନୀୟ ଗୃହ ଆ-ଭାଷ୍ୟକାର ଶ୍ରୀ ଥିଓସୁମର (Theo Summer) ସେପ୍-ଟେମ୍ବରରେ ପ୍ରଥମ ଥରପାଇଁ ସତର୍କ କରିଦେଲେ ଯେ ବିକ୍ଷୋଭ ଘୋଷିତ ସୀମା ମଧ୍ୟରେ ରହିବ ଏବଂ କ୍ଷେପଣାସ୍ତ୍ର ବିରୋଧୀ ଆନ୍ଦୋଳନ ଯେପରି ବିପ୍ଳବର ହସ୍ତ ନ ହୁଏ । କ୍ଷେପଣାସ୍ତ୍ର ମୁତୟନକୁ ବଳପ୍ରୟୋଗ ଭାବେ ବନ୍ଦ କରିବା "ରାଜଦ୍ରୋହ" ବୋଲି ଧରାହେବ ଏବଂ ସେହି ଅନୁଯାୟୀ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାହେବ ।

ଶାସକ ଶ୍ରେଣୀ ଗୋଟିଏ ପରେ ଗୋଟିଏ କୌଶଳ ପ୍ରୟୋଗ କରିବା ଆରମ୍ଭ କରି ଦେଲେ । ଯେପରି କି ବଢ଼ିଯାଉଥିବା ଆନ୍ଦୋଳନକୁ ଅଧିକ୍ଷୁଦ୍ଧନରେ ରଖାଯାଇ ପାରିବ । ଏହି ଗଣ ଆନ୍ଦୋଳନରେ ଯେଉଁମାନେ ବେଶି ଲକ୍ଷ୍ୟାଧୀନ ସଚେତନ ଭାବେ ସାମ୍ରାଜ୍ୟ-ବାଦ ବିରୋଧୀ, ଏବଂ ବିପ୍ଳବୀ ସେହି ଗୋଷ୍ଠୀକୁ ସରକାର ଫୌଜଦାରୀ ମକଦ୍ଦମାରେ ଫସାଇବା ପାଇଁ ଠିକ୍ କଲେ । ପ୍ରମାଣ ସ୍ୱରୂପ ଏହି ସବୁ ଗୋଷ୍ଠୀମାନଙ୍କର ବର୍ଲିନରୁ ପ୍ରକାଶିତ ପତ୍ରିକା "ରେଡ଼ିକାଲ" ( Radikal )କୁ ଆକ୍ରମଣ କଲେ ଏବଂ ଏହି ପତ୍ରିକାରେ ଜଡ଼ିତ ଦୁଇଜଣ ବ୍ୟକ୍ତିଙ୍କୁ "ଧ୍ୱଂସାତ୍ମକବାଦୀ ସଂଗଠନକୁ ସାହାଯ୍ୟ କରୁଥିବା" ଅଭିଯୋଗ ନେଇ ଗିରଫ କଲେ ।

## ଅଟୋନୋମେନ୍ (The Autonomen)

୧୯୭୯-୮୦ ସମୟର ଇରାନ ଓ ନିକାରାଗୁଆ ବିପ୍ଳବ ଏବଂ ଦୁଇଟି ସାମ୍ରା-

ଜ୍ୟବାଦୀ ଗୋଷ୍ଠୀ (ପାଶ୍ଚାତ୍ୟ ସାମ୍ରାଜ୍ୟବାଦ ଓ ସୋଭିଏତ-ସାମ୍ରାଜ୍ୟବାଦ) ମଧ୍ୟରେ ଶା- ଙ୍କ ଚମୁତ ଯୋଗୁ ଅନ୍ତର୍ଜାତୀୟ କ୍ଷେତ୍ରରେ ଅନେକ ତନ ସୃଷ୍ଟି ହୋଇଥିଲା । ଏହି ଆନ୍ଦୋଳନର ଫଳରେ ଦେଖାଦେଲା ଅଷ୍ଟାଲିନ ସେନ୍ ଗୋଷ୍ଠୀ । ଏହି ଗୋଷ୍ଠୀରେ ବିଭିନ୍ନ ପ୍ରକାରର ବିଚ୍ଛିନ୍ନତାବାଦୀ (Anarchist) ମାର୍କସବାଦୀ, ସଂଶୋଧନବାଦୀ ଏବଂ ସାମ୍ରାଜ୍ୟବାଦ-ବିରୋଧୀ ବ୍ୟକ୍ତିମାନେ ସଭ୍ୟଭୁକ୍ତ । ଏମାନେ ସାମ୍ରାଜ୍ୟବାଦ ବ୍ୟବସ୍ଥାକୁ ଶୋଷଣ ଓ ଅତ୍ୟାଚାରର ହସ୍ତ ବୋଲି ମନେ କରନ୍ତି । ଏବଂ ସଶସ୍ତ୍ର ମୁକ୍ତି ସଂଗ୍ରାମକୁ ସମର୍ଥନ କରିବା ଏମାନଙ୍କର ପ୍ରଧାନ ପ୍ରବୃତ୍ତି । ଏମାନେ ଲଢ଼ାଖୁ । Social-Pacifist ନୁହନ୍ତି ।

୧୯୮୧ରେ ଯେତେବେଳେ ଯୁଦ୍ଧ-ବିରୋଧୀ ଆନ୍ଦୋଳନ ତେଜି ଉଠିଲା । ଅଷ୍ଟାଲିନୋପେନ୍ ବାଲ ହଠାତ ଏହାକୁ କାହିଁ ବୁଝି ପାରିଲେ ନାହିଁ । ସେମାନେ ଭାବିଲେ ଯେ ପାଶ୍ଚାତ୍ୟ ଗୋଷ୍ଠୀଙ୍କର ଯୁଦ୍ଧ ପସ୍ତୁତ ତର୍କିତ ଦେଶମାନଙ୍କ ପାଇଁ ଉଦ୍ଦିଷ୍ଟ । ବିଶ୍ୱଯୁଦ୍ଧ ପାଇଁ ଉଦ୍ଦିଷ୍ଟ ନୁହେଁ । ସେମାନେ ଭାବିଲେ ଯେ ଯେହେତୁ ସୋଭିଏତ୍ ୟୁନିୟନ ଜାତୀୟ ମୁକ୍ତି ଆନ୍ଦୋଳନକୁ 'ସମର୍ଥନ' କରୁଛି ସେହେତୁ ସୋଭିଏତ ୟୁନିୟନକୁ ଧମକ ଦେବାପାଇଁ ପାଶ୍ଚାତ୍ୟ ଦେଶର ଏହି ଯୁଦ୍ଧ ପସ୍ତୁତି । ସୋଭିଏତ୍ ଗୋଷ୍ଠୀର ଯୁଦ୍ଧ ପସ୍ତୁତିକୁ ସେମାନେ ତୃତୀୟ ବିଶ୍ୱଯୁଦ୍ଧ ପାଇଁ ଉଦ୍ଦିଷ୍ଟ ବୋଲି ଭାବିଲେ ନାହିଁ । ବରଂ ଏହା ପାଶ୍ଚାତ୍ୟ ଯୁଦ୍ଧ ପ୍ରସ୍ତୁତି ବିରୁଦ୍ଧରେ ପ୍ରତିକ୍ରିୟା ବୋଲି ସେମାନେ ମନେ କଲେ । ସେମାନେ ମଧ୍ୟ ପଶ୍ଚିମ ଜର୍ମାନୀକୁ ସାମ୍ରାଜ୍ୟବାଦୀ ବୋଲି ମନେକଲେ ନାହିଁ ।

ଏହି ରାଜନୈତିକ ଦେବାଳିଆ ପଣ ପାଇଁ ସେମାନେ ଏକ ଅବସ୍ଥାର ସମ୍ମୁଖୀନ ହେଲେ । ପୂର୍ବର ଗଣ ଆନ୍ଦୋଳନରେ ଯେତେବେଳେ ସେମାନେ ହଜାର ହଜାର ଜନଗଣଙ୍କୁ ପ୍ରଭାବିତ କରିପାରୁଥିଲେ ଏବେ ହଜାର ହଜାର କର୍ମୀ ଭିନ୍ନ ପତାକା ତଳେ ଚାଲିଛନ୍ତି । ଯେଉଁ ପତାକା ନ ଲକ୍ଷ ଲକ୍ଷ ଲୋକଙ୍କୁ ଅହିଂସା ଆନ୍ଦୋଳନରେ ପ୍ରଭାବିତ କରୁଥିଲା । ଯେତେବେଳେ ଲକ୍ଷ ଲକ୍ଷ ଲୋକ ରାଜନୈତିକ ଜୀବନକୁ ଟାଣି ହୋଇ ଆସୁଥିଲେ, ଅଷ୍ଟାଲିନୋପେନ ଗୋଷ୍ଠୀର ଅଣ-ରାଜନୈତିକ-ରାଜନୀତିର ସ୍ୱଭାବିକ ଦୁର୍ବଳତା ଯୋଗୁଁ, ସେତେବେଳେ ସେମାନଙ୍କୁ ନେତୃତ୍ୱ ଦେବା ତାଙ୍କ ପକ୍ଷରେ ଅସମ୍ଭବ ହୋଇ ପଡ଼ୁଥିଲା ।

ସାମ୍ରାଜ୍ୟବାଦର 'ଦୁର୍ଗ' ମଧ୍ୟରେ ରହି ସାମ୍ରାଜ୍ୟବାଦ ବ୍ୟବସ୍ଥା ବିରୁଦ୍ଧରେ ଯୁଦ୍ଧ କରିବା ପରିବର୍ତ୍ତେ ସେମାନଙ୍କର ସଂଗ୍ରାମ ସାମ୍ରାଜ୍ୟବାଦ ଶକ୍ତିର କିଛି ସଂପତ୍ତିର କ୍ଷୟକ୍ଷତି (Materialdamage) କରିବା ମଧ୍ୟରେ ସୀମିତ ରହିଲା । ତେଣୁ କ୍ଷେପଣାସ୍ତ୍ର ସଂକଟକୁ କେନ୍ଦ୍ରକରି ଜନମତ ଗଢ଼ି ତୋଳିବାର ଯୁଦ୍ଧକୁ

ସେମାନେ ସୃଷ୍ଟି କରିଲେ ନାହିଁ । ଫଳରେ ସଠିକ୍ ରାଜନୀତିକୁ ପ୍ରାଧାନ୍ୟ ନ ଦେଇ କୌଶଳଗତ ପ୍ରକ୍ରିୟା ଉପରେ ବିଶେଷ ଜୋର ଦେଇ ହିଂସା/ଅହିଂସା ପ୍ରଶ୍ନ ଉପରେ ସେମାନଙ୍କର ଲକ୍ଷ କେନ୍ଦ୍ରୀଭୂତ ହେଲା । ତେଣୁ ଆବଶ୍ୟକୀୟ ରାଜନୈତିକ ସଂଗ୍ରାମ ଚଳାଇବା ପାଇଁ ସେମାନେ ଅପାରଗ ରହିଲେ ।

ଯେତେବେଳେ କ୍ଷେପଣାସ୍ତ୍ର ଅସ୍ତିବାଚ ଫେଲ ହୋଇଗଲା ଏବଂ ବିଭିନ୍ନ ଶସ୍ତ୍ରମାନେ ଆନ୍ଦୋଳନକୁ ରୁଦ୍ଧ ପଡ଼ିଲେ ସେତେବେଳେ ଏହି ଅଟୋନୋମେନ୍ ଗୋଷ୍ଠୀ ସ୍ଥିର କଲେ ଯେ ବ୍ରେମେରହାଭେନ ବନ୍ଦର ( Bremerhaven Port ) ଠାରୁ ପଶ୍ଚିମ ଜର୍ମାନୀରେ ଥିବା ସମସ୍ତ ଆମେରିକାର ସାମରିକ ଶସ୍ତ୍ର ପର୍ଯ୍ୟନ୍ତ U. S. Munitions Transportକୁ ବାଧାଦେବା ।

## କ୍ରେଫେଲଡାର ଘଟଣା ( Krefeldar Incident ) :

ପ୍ରଥମେ ଯେତେବେଳେ ନୂତନ କ୍ଷେପଣାସ୍ତ୍ର ବସାଇବାର କଥା ଠିକ୍ ହେଲା ସେତେବେଳେ ଅସଂଖ୍ୟ ପଣ୍ଡିତ, ସୁନାମଧନ୍ୟ ଲେଖକ, ଅଭିନେତା, ଶିଳ୍ପୀ ଏବଂ ଶିକ୍ଷାବିତ୍ Krefeldar Appeal ନାମକ ଚିଠିରେ ( Letter of Protest) ଦସ୍ତଖତ କରିଥିଲେ ତଥା ୪୦ ଲକ୍ଷରୁ ଊର୍ଦ୍ଧ୍ୱ ଦସ୍ତଖତ ହାସଲ କରି ପାରିଥିଲେ । ହେଲେ କ୍ରେଫେଲଡ଼ାର ଯେତେବେଳେ ଆମେରିକା ଓ ଜର୍ମାନୀର ଶାସକମାନେ ୩୦୦ ବର୍ଷର ଜର୍ମାନ୍-ଆମେରିକା ମୈତ୍ରୀର ଉତ୍ସବ ଜାକଜମକରେ ପାଳନ କରିବା ପାଇଁ ଠିକ୍ କଲେ । ଏହି ଉତ୍ସବର ଉଦ୍ଦେଶ୍ୟ ଥିଲା ଯେ କ୍ଷେପଣାସ୍ତ୍ର-ବିରୋଧୀ ଆନ୍ଦୋଳନ ବିରୁଦ୍ଧରେ ଜନମତ ସୃଷ୍ଟି କରିବା ।

ଯେତେବେଳେ ସରକାରୀ ଦ୍ୱାରା ସ୍ୱୀକୃତ କ୍ଷେପଣାସ୍ତ୍ର-ବିରୋଧୀ-ବିକ୍ଷୋଭକାରୀ-ମାନେ ଶାନ୍ତିପୂର୍ଣ୍ଣ ଉପାୟରେ ପଶ୍ଚିମ ଜର୍ମାନ-ଆମେରିକା-ମୈତ୍ରୀ-ଉତ୍ସବ ମଞ୍ଚ ଠାରୁ କିଛି ଦୂରରେ ଥାଇ ଶୋଭାଯାତ୍ରାରେ ଚାଲିଲେ ସେତେବେଳେ ଅଟୋନୋମେନ ଗୋଷ୍ଠୀ ସାମ୍ରାଜ୍ୟବାଦୀମାନଙ୍କର ଯୁଦ୍ଧ ପାର୍ଟି ସହ ସଂଘର୍ଷ ଆରମ୍ଭ କରିଦେଲେ ଏବଂ ଅଟୋନୋମେନ୍‌ମାନଙ୍କ ମଧ୍ୟରୁ କେତେକ ପୋଲିସ କର୍ଡ଼ନକୁ ଭାଙ୍ଗି ଆମେରିକା ଉପ-ରାଷ୍ଟ୍ରପତିଙ୍କ କାରକୁ ପଥର ଫିଙ୍ଗିବାରେ ସଫଳ ହୋଇଥିଲେ । କେତେକ ଶାନ୍ତିକାମୀ ଆନ୍ଦୋଳନକାରୀମାନେ ଏହି ଘଟଣାକୁ ନିନ୍ଦା କରିଥିଲେ ।

## ମୁଟ୍‌ଲାଙ୍ଗେନ ଘଟଣା (Mutlangen Incident ) :

ପାରସିଂ- ୨ କ୍ଷେପଣାସ୍ତ୍ର ମୁଟ୍‌ଲାଙ୍ଗେନରେ ବସାଇବା ପାଇଁ ସ୍ଥିର ହୋଇଥିଲା । ସେପ୍ଟେମ୍ବର ମାସର ପ୍ରଥମ ଭାଗରେ ସରକାରୀ ସ୍ୱୀକୃତ ଶାନ୍ତିକାମୀ ଆନ୍ଦୋଳନ-

ତାହାମାନେ ମୁଟଲଙ୍ଗେନରେ ଆମେରିକାର ଘାଟୀକୁ ନ ଯାଇ ଦେବା ପାଇଁ ଏକ ପ୍ରତୀକ-ଧର୍ମୀ ( Symbolic) ବିକ୍ଷୋଭ ପ୍ରଦର୍ଶନ କଲେ । ଏହି ବିକ୍ଷୋଭ ପ୍ରଦର୍ଶନ ସରକାରୀ ସ୍ୱୀକୃତ ଦେଲା. ନୋଟିସ ଓ ଆମେରିକାର ସାମରିକ ବାହିନୀର ମିଳିତ ଯୋଜନା (Joint-Plan) ଅନୁଯାୟୀ ହୋଇଥିଲା । ଘାଟୀଠାରେ ସମସ୍ତ କାର୍ଯ୍ୟକ୍ରମକୁ ସଫଳ କରାଯାଇ ଥିଲା । ଏବଂ Blockade ସମୟରେ ସମସ୍ତ ଯାନବାହାନର ଗତାଗତ ସଂପୂର୍ଣ୍ଣ ରୂପେ ବନ୍ଦ କରାଇ ଦିଆଯାଇ ଥିଲା ।

Petra Kelly, Guint·r Grass, Heinrich Boll ଏବଂ Gen. Gert Bastain ଭଳି "ଶାନ୍ତିକାମୀ ଖ୍ୟାତି ସଂପନ୍ନ ବ୍ୟକ୍ତିମାନେ" ଉପସ୍ଥିତ ଥିଲେ । ସମସ୍ତ Media ଏହି "ଐତିହାସିକ ବିକ୍ଷୋଭ"କୁ report କରିବା ପାଇଁ ଉପସ୍ଥିତ ଥିଲେ । ଏହି 'ଖ୍ୟାତି ସଂପନ୍ନ ବ୍ୟକ୍ତିମାନେ" ତାଙ୍କ ଘାଟୀ ସମ୍ମୁଖରେ ତାଙ୍କ ରାସ୍ତା ଉପରେ ଧାଡ଼ିଧରି ବସି ରହିଥିଲେ ଏବଂ ପୂର୍ବରୁ ନିର୍ଦ୍ଧାରିତ ସମୟପରେ ପୋଲିସ ବନ୍ଧୁମାନଙ୍କ ଦ୍ୱାରା ସେମାନେ ସସମ୍ମାନେ ବିତାଡ଼ିତ ହୋଇଥିଲେ ।

ଏଠାରେ କୋହିଏ ଛୋଟ ସମସ୍ୟା ଉପୁଜିଲା । ଏମାନଙ୍କ ମଧ୍ୟରୁ କେତେକ ସରଳ ବିଶ୍ୱାସୀ ପ୍ରଶ୍ନ କଲେ ଯେ ସେମାନେ ଏଠାକୁ ଆସିଥିଲେ ନୂତନ କ୍ଷେପଣାସ୍ତ୍ର ବସା ଯିବାର ବିରୋଧ କରିବା ପାଇଁ । ଆଉ ଏଭଳି ପ୍ରହେଳିକା ଯାହା ଘଟିଗଲା ତାହା ଫଳପ୍ରଦ ନୁହେଁ । ସେମାନେ ଦାବୀ କଲେ ଯେ ନିକଟସ୍ଥ ସହର ସ୍ୱାବିସ୍ ଗେମଣ୍ଡ (Schwabiseh Gemund )କୁ ତାଙ୍କର ବିକ୍ଷୋଭକୁ ଘୁଞ୍ଚାଇ ନେବା ପାଇଁ ଏବଂ ଆମେରିକା Barrackର ପ୍ରବେଶକୁ ବାଧାଦେବା ପାଇଁ । ପ୍ରଚଣ୍ଡ ତର୍କ ସେଠାରେ ଚାଲିଲା । ଏଭଳି ପ୍ରତିରୋଧ କାର୍ଯ୍ୟକୁ ନ କରିବା ପାଇଁ କହିବା "ଶାନ୍ତିକାମୀ" ଖ୍ୟାତି ସଂପୂର୍ଣ୍ଣ ବ୍ୟକ୍ତିମାନଙ୍କ ପକ୍ଷେ ଅସମ୍ଭବ ହୋଇ ପଡ଼ିଥିଲା । ତେଣୁ ସେମାନେ ଯୁକ୍ତି ବାଢ଼ିଲେ ଯେ ଏଭଳି ବିଚ୍ଛେଦ ଜନକ କାର୍ଯ୍ୟ (Disruptive Action ) ଆଞ୍ଚଳିକ ଜନଗଣଙ୍କୁ ଆମ୍ଭଠାରୁ ଦୂରେଇ ନେବ ।

## ଅକ୍ଟୋବର ପ୍ରତିବାଦ ( October Protest ) :

କ୍ଷେପଣାସ୍ତ୍ର ବିରୋଧୀ-"ଶାନ୍ତି ସପ୍ତାହ" ଅକ୍ଟୋବର ୧୫ ରୁ ୨୩ ପର୍ଯ୍ୟନ୍ତ ଚାଲିଲା ପଶ୍ଚିମ ଜର୍ମାନୀର ପ୍ରାୟ ସମସ୍ତ ସହରରେ ଆଞ୍ଚଳିକ କାର୍ଯ୍ୟକ୍ରମ ତଥା ଗଣ-ବିକ୍ଷୋଭ ପ୍ରଦର୍ଶନ କରାଯାଇଥିଲା । "ଶାନ୍ତି ସପ୍ତାହ"ର ମୁଖ୍ୟ ଆଭିମୁଖ୍ୟ ରହିଥିଲା : "ଜର୍ମାନୀକୁ ବଂଚାଅ" । ଜନଗଣଙ୍କ ଚିନ୍ତାଧାରା ଏହା ଠାରୁ ଆଉ ଅଧିକ ଅଗ୍ରସର ହୋଇ ନ ଥିଲା । କେବଳ ଜର୍ମାନ ଜାତୀୟତାବାଦ ମଧ୍ୟରେ ସୀମିତ ଥିଲା ।

"ଶାନ୍ତ ସପ୍ତାହ" ଅବଶ୍ୟ ପୂରା ଶାନ୍ତରେ କଟି ନ ଥିଲା । ପ୍ରାୟ ୨୦ ଲକ୍ଷ ପାଖାପାଖି ଲୋକେ ଭାଗ ନେଇଥିଲେ । ହଜାର ହଜାର ଲୋକେ ଗିରଫ ହୋଇଥିଲେ । ଭିନ୍ନ ଜାଗାମାନଙ୍କରେ ବିକ୍ଷୋଭକାରୀ ଓ ପୋଲିସମାନଙ୍କ ମଧ୍ୟରେ ହାତାହାତି ସଂଘର୍ଷ ମଧ୍ୟ ହୋଇ ଯାଇଥିଲା ।

ବୁର୍ଜୁଆ ଶକ୍ତି ସବୁଓ "ଶାନ୍ତ ସପ୍ତାହ" ଅସ୍ୱସ୍ତିଧୀନ ରହିଥିଲେ, କିନ୍ତୁ କ୍ଷେପଣାସ୍ତ୍ର ବସାଇବାରେ ସଫଳ ହୋଇ ନ ଥିଲେ । ବହୁ ପରିମାଣରେ ଲୋକ ଶାନ୍ତ ରହିଥିଲେ ଏବଂ ସେମାନଙ୍କର ସ୍ୱର ଉଠାଇଥିଲେ । ବର୍ତ୍ତମାନ ସେମାନଙ୍କର କାମ ହେଲା ପରକୁ ବ୍ୟୁରୋକ୍ରାସି ଫେରିଯିବା ଏବଂ ରାଜନୀତିଜ୍ଞ ଓ ନେତାମାନଙ୍କର ବକ୍ତୃତି କଥା ଶୁଣିବାକୁ ଅପେକ୍ଷା କରି ରହିବା ।

## ବ୍ରେମେର୍ ହାଭେନ୍ ଘେରାଓ (Bremerhaven Blockade ) :

ଜର୍ମାନିରେ ସବୁଠାରୁ ଚମକ ପ୍ରଦ ଘଟଣା ହେଉଛି ବ୍ରେମେର ହାଭେନ୍ (Bremer haven)ରେ U.S. Army Port facilityକୁ Blockade କରିବା । ଏହା କେବଳ ଭିନ୍ନ ଅଟୋନୋମେନ୍ ଶକ୍ତି ଦ୍ୱାରା ସମ୍ଭବ ହୋଇଥିଲା । DSP ଏବଂ DKP ଏହି Bremerhaven Blockadeକୁ ପ୍ରଥମେ ବିରୋଧ କରୁଥିଲେ । କିନ୍ତୁ ଆଞ୍ଚଳିକ ବୈଠକମାନଙ୍କରେ ଯେତେବେଳେ ଉଦ୍ୟମୀ ବ୍ୟକ୍ତିମାନେ ଏହି Blockade ପାଇଁ ପ୍ରଚୁର ସମର୍ଥନ ପାଇଲେ ସେତେବେଳେ DSP/DKP ନେତୃତ୍ୱ ଅନୁଭବ କଲେ ଯେ ଏହି Blockadeକୁ ସେମାନେ ବନ୍ଦ କରି ପାରିବେ ନାହିଁ । ତେଣୁ ସେମାନେ ମଧ୍ୟ ଏହି Blockade ପାଇଁ ଡାକରା ଯେ ଯୋଗଦେଲେ ତାହା ନୁହେଁ । ଅଧିକନ୍ତୁ ସେମାନେ ମଧ୍ୟ ବହୁ ସଂଖ୍ୟାରେ ଯୋଗଦେଇ ଅଟୋନୋମେନଙ୍କ ସଂଖ୍ୟା ଠାରୁ ୨/୩ ଗୁଣ ବଳି ପଡ଼ିଲେ । ତେଣୁ ବ୍ରେମେର ହାଭେନ ବ୍ଲକେଡ ସମ୍ମାନଜନକ ସୀମା ( 'respectable' bounds ) ମଧ୍ୟରେ ରହିଲା । ଅଟୋନୋମେନ ଶକ୍ତିମାନଙ୍କର ଇଚ୍ଛା ଅନୁସାରେ Blockade ସେତେ ଲଢ଼ାକୁ ଧରଣର ହୋଇପାରିଲା ନାହିଁ ।

## 'ଶାନ୍ତ ସପ୍ତାହ'ର ପରବର୍ତ୍ତୀ ଅବସ୍ଥା :

"ଶାନ୍ତ ସପ୍ତାହ" ପରେ ପରିସ୍ଥିତି ନୀରବ ରହିଥିଲା । ଜର୍ମାନୀରେ ଶାସକ ଦଳ ନିଜର ଗଣତନ୍ତ୍ରକୁ ପ୍ରଶଂସା କଲା ଏବଂ କ୍ଷେପଣାସ୍ତ୍ରକୁ ବସାଇବା ସକାଶେ ପାର୍ଲିଆମେଣ୍ଟର ସ୍ୱୀକୃତ ପାଇଁ ଅଣ୍ଟା ଭିଡ଼ିଲା । ସରକାରୀ ସ୍ୱୀକୃତ ସଂସ୍କାର-ବାଦୀ, 'ଶାନ୍ତିକାମୀ' ଆନ୍ଦୋଳନକାରୀମାନେ ଏକ ବିରାଟ ସଂଗ୍ରାମ କରି ପାରିଛନ୍ତି

ବୋଲି ପରଷ୍ପରକୁ ଅଭିନନ୍ଦନ ଜ୍ଞାପନ କରିବାରେ ବ୍ୟସ୍ତ ରହିଲେ ଓ ଆତ୍ମତୃପ୍ତି ଲଭିକଲେ । କିନ୍ତୁ ଏ ଆନ୍ଦୋଳନରେ ଭାଗ ନେଉଥିବା କର୍ମୀମାନଙ୍କର ଏକ ଅଂଶ ଏକ ଦୃଢ଼-ପ୍ରତିରୋଧ ବଦଳରେ ଏଭଳି ଛଳନାତ୍ମକ ବିରୋଧ [Symbolic Protest ]ରେ ସଂପୂର୍ଣ୍ଣ ଅସନ୍ତୁଷ୍ଟ ହୋଇ ପଡ଼ିଥିଲେ । ଏହି ଲଢ଼ାକୁମାନେ DSP/DKP/Green ପାର୍ଟି ମାନଙ୍କର ଅନୁଗାମୀ (follower) ନ ଥିଲେ । କେବଳ ଆଞ୍ଚଳିକ ସ୍ତରରେ ଏମାନେ ସଂଗଠିତ ଥିଲେ । ବର୍ତ୍ତମାନ ପ୍ରଶ୍ନ ରହିଲା : କେଉଁ ରାସ୍ତାରେ ଆଗେଇଯିବାକୁ ହେବ ?

## ସାମ୍ରାଜ୍ୟବାଦ ବିହୀନ ବିଶ୍ୱ ସଂଗଠନ [ World without Imperialism Contigent (WWIC)]

ଏହି ଏକ ଉଗ୍ର ଯୁଦ୍ଧ ମୁର୍ଦ୍ଦାବାଦ ... ନେଇ ଜର୍ମାନୀର ରାଜଧାନୀ ... ପରେ ପଦାର୍ପଣ କଲେ ଆମେରିକାରୁ ଆସିଥିବା WWIC. Ante-Draft, Anti-nuke ଏବଂ Feminist ଆନ୍ଦୋଳନର କେତେକ କର୍ମୀ, ଛାତ୍ର ଏବଂ ସଂଗ୍ରାମୀ ଯୁବକମାନଙ୍କୁ ନେଇ R.C.P. (Revolutionary Communist party), U.S.A. ନେତୃତ୍ୱରେ WWIC ଗଠିତ । ସେମାନଙ୍କର ଉଲ୍ଲେଖ୍ୟ ସ୍ଲୋଗାନ୍ ଥିଲା :

"ପାରସିଂ ଏବଂ କ୍ରୁଜ୍ କ୍ଷେପଣାସ୍ତ୍ର ମୁର୍ଦ୍ଦାବାଦ"
"ପୂର୍ବ ଏବଂ ପଶ୍ଚିମ ଯୁଦ୍ଧ ପ୍ରସ୍ତୁତି ମୁର୍ଦ୍ଦାବାଦ"
"ସାମ୍ରାଜ୍ୟବାଦ ବିହୀନ ବିଶ୍ୱ ଗଢ଼ —
(କିନ୍ତୁ) ସାମ୍ରାଜ୍ୟବାଦୀ ବିଶ୍ୱ ଯୁଦ୍ଧ ଗଢ଼ନା"

[Down with the Pershing and Cruise Missiles and All war preparations Both East and West !", 'A world without Imperialism, Not an Imperialist world war")

ପଶ୍ଚିମ ଜର୍ମାନୀରେ ପ୍ରବାସୀ ମାନେ ଜର୍ମାନର Federation of workers from Turky (ATIF) ମଧ୍ୟ WWIC ସହିତ ଭାବେ ସଂଯୁକ୍ତ ହେଲେ । Communist party of Turky ର ରାଜନୀତି ଦ୍ୱାରା ATIF ପରିଚାଳିତ ଥିଲା ।

## ନଭେମ୍ବର ୨୧-କ୍ଷେପଣାସ୍ତ୍ର ପାଇଁ ସ୍ୱୀକୃତିର ଦିନ ( Nov. 21 : The Go Ahead Vote ) :

ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ ୧୯୮୩ ନଭେମ୍ବର ୨୧ ତାରିଖ ଦିନ

ପଶ୍ଚିମ ଜର୍ମାନ ସରକାର କ୍ଷେପଣାସ୍ତ୍ର ବସାଇବା ପାଇଁ ପାର୍ଲିଆମେଣ୍ଟର ସ୍ୱୀକୃତି ପାଇବା ପ୍ରକାଶେ ସ୍ଥିର କରିଥିଲେ ।

ନଭେମ୍ବର ପ୍ରଥମ ଭାଗରେ କାର୍ଯ୍ୟସ୍ୱ ଶାନ୍ତି ସମ୍ମେଳନ ଡକାଗଲା । plenary session ମାନଙ୍କରେ ସରକାରୀ ସ୍ୱୀକୃତ ଆନ୍ଦୋଳନକାରୀ ନେତା ମାନଙ୍କ ପ୍ରଚାର ସମାଲୋଚନା କରାଗଲା ଯେ ସେମାନେ ଆନ୍ଦୋଳନକୁ ଏକ ଛଳନାତ୍ମକ ପ୍ରତିରୋଧ ( Symbolic Resistance ) ଭାବରେ ନେବାପାଇଁ ବାଂଛ ବୋଲି । ଏବଂ ଏଭଳି ପ୍ରତିରୋଧ ଫଳପ୍ରଦ ନୁହେଁ । ବହୁ ସଂଖ୍ୟାରେ ନିଜର ଅନୁଗାମୀ ମାନଙ୍କୁ ନେଇ ସମଗ୍ର ଆନ୍ଦୋଳନକୁ ଏକ ଛଳନାତ୍ମକ-ପ୍ରତିରୋଧର ସୀମା ମଧ୍ୟରେ ବାନ୍ଧିରଖିବାର କୌଶଳ DSP/DKP ପାର୍ଟି ମାନଙ୍କର ଏହି ମୁଦ୍ରାର୍ତ୍ତିକ ପାଇଁ ଦର୍ଶାହେଲା ।

ବୁଣ୍ଡେଷ୍ଟାଗ୍ ( Bundestag ) ରେ ନଭେମ୍ବର ୨୨ର ଭୋଟକୁ କେନ୍ଦ୍ର କରି ଆଉ ଏକ କ୍ଷେପଣାସ୍ତ୍ର ଘାଟୀ ବିରୋଧୀ ଆନ୍ଦୋଳନ ଆରମ୍ଭ କରିବା ପାଇଁ ବହୁମତ ପ୍ରକାଶ ପାଇଲା । ନିର୍ଦ୍ଦଳୀୟ ଗୋଷ୍ଠୀମାନେ ଯେତେବେଳେ ମୁକ୍ତ ଭାବରେ ଘୋଷଣା କଲେ ଯେ କାର୍ଯ୍ୟସ୍ୱ ସମ୍ମେଳନ କିମ୍ବା ସମନ୍ୱୟ ସମିତି (KA) ସମର୍ଥନ କରନ୍ତୁ ବା ନ କରନ୍ତୁ ନଭେମ୍ବର ୨୨ ଦିନ ବନ୍ନ (Bonn)ରେ ସେମାନେ ବିକ୍ଷୋଭ ପ୍ରଦର୍ଶନ କରିବେ, DSP/DKP ଅନିଚ୍ଛାସତ୍ତ୍ୱେ ଏହାକୁ ମାନିନେବାକୁ ବାଧ୍ୟହେଲେ । ସେମାନଙ୍କର ଉଦ୍ଦେଶ୍ୟ ରହିଲା ଯେ ଏହି ନଭେମ୍ବର ବିକ୍ଷୋଭରେ ସେମାନେ ଅଂଶ ଗ୍ରହଣ କରିବେ । ଯାହା ଫଳରେ କି ସେମାନେ ସୁବିଧା ପାଇବେ ଏହି ବିକ୍ଷୋଭକୁ ସହଜରେ ଆୟତ୍ତ କରିବା ପାଇଁ ।

କାର୍ଯ୍ୟସ୍ୱ ଶାନ୍ତି ସମ୍ମେଳନ ସମୟରେ WWIC, ATIF ଏବଂ Fight back (ଏକ ବିପ୍ଳବୀ ପତ୍ରିକା) ର କର୍ମୀ ମାନେ ବନ୍ନର ନଭେମ୍ବର-୨୨ ବିକ୍ଷୋଭରେ ସାମ୍ରାଜ୍ୟବାଦ-ବିରୋଧୀ ସଂଗଠନ ( Anti-Imperialist Contingent ) ଗଠନ କରିବା ପାଇଁ ମିଳିତ ଭାବେ ଆହ୍ୱାନ କଲେ ।

ପଶ୍ଚିମ ଜର୍ମାନୀର ଅଧିକାଂଶ ନଗରରେ WWICର ସଭ୍ୟ ମାନେ ଏବଂ ତୁର୍କୀର ଶ୍ରେଣୀ-ସଚେତନ ଶ୍ରମିକ ମାନେ ରାସ୍ତାରେ, କେଣ୍ଟିନ୍‌ରେ, ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରେ ଏବଂ ଏପରିକି Green ପାର୍ଟିର କାର୍ଯ୍ୟସ୍ୱ ସମ୍ମେଳନରେ Anti-Imperialist Contingent ଗଢ଼ିବା ପାଇଁ ଜନଗଣଙ୍କୁ ଆହ୍ୱାନ ଦେଲେ । ସେମାନଙ୍କର ବକ୍ତବ୍ୟ ଥିଲା :

"ଯେଉଁ ନଭେମ୍ବର-୨୨ ତାରିଖରେ ପାର୍ସିଂ-୨ ଏବଂ କ୍ରୁଜ୍ କ୍ଷେପଣାସ୍ତ୍ର ପାଇଁ ପାର୍ଲିଆମେଣ୍ଟ ସ୍ୱୀକୃତି ଦେବ ସେହି ଦିନଟି ବନ୍ନର ରାସ୍ତାମାନଙ୍କରୁ ଏକ ଶକ୍ତିଶାଳୀ

ମନ୍ତବ୍ୟ ସ୍ପଷ୍ଟ ଭାବରେ ପ୍ରକାଶ ପାଇବ । ଯେଉଁ ଦିନ 'ଗଣତାନ୍ତ୍ରିକ ଅଧ୍ୟାଦେଶ' ନାମରେ ସେମାନେ କହିବାକୁ ଦାବୀ କରିବେ ଏବଂ ଯୁଦ୍ଧ ସପକ୍ଷେ ସେମାନଙ୍କର ନିର୍ଦ୍ଧାରିତ ଗତିକୁ ଗୁରୁତ୍ୱପୂର୍ଣ୍ଣ ସ୍ୱୀକୃତି ଦେବାକୁ ଘୋଷଣା କରିବେ ସେହି ଦିନଠି ରାସ୍ତାରେ ଲକ୍ଷ ଲକ୍ଷ ଲୋକଙ୍କ ଦ୍ୱାରା ସେମାନଙ୍କର ମୁହାଁ ଖୋଲି ଦିଆଯିବ । ସେମାନଙ୍କୁ ଦୋଷୀ ସାବ୍ୟସ୍ତ କରାଯିବ ଏବଂ ବିରୋଧ କରାଯିବ । ଏହି ସମସ୍ତ ପଦକ୍ଷେପକୁ ସାବ୍ୟସ୍ତ କରିବାର ଅଧିକାର ସପକ୍ଷେ ସେମାନଙ୍କୁ ଘୋଷଣା କରିବାକୁ ଦିଆଯାଉ-ନ୍ତୁ ସମଗ୍ର ବିଶ୍ୱ ଦେଖନ୍ତୁ ଯେ ତା'ର କଣ୍ଟାର ଜାଲ ଓ ସଶସ୍ତ୍ର-ଦସ୍ୟୁ ମାନଙ୍କ ଘେର ଭିତରେ ଯାହା କିଛି ସେମାନଙ୍କର ତର୍କ । ପର୍ଯ୍ୟବେକ୍ଷଣ କରାଯାଉଛି । …………"

[ "A clear and powerful statement must be made in the streets of Bonn on November 21st, the day the parliament rubber-stamps the Pershing II and cruise missile deployment. On that day, when they will claim to speak in the name of the "democratic mandate." and will declare their solemn approval for this calculated move toward war, they must be indicted, exposed and opposed by thousands in the streets. Let them declare their 'right' to approve these steps – while the whole world can see that their deliberations take place behind rows of barbed wire and their armed thugs…… " —A world to win, 2nd Issue of 1985, P.P. 86. ]

ସେମାନଙ୍କର ରାଜନୈତିକ ଦିଗ ଥିଲା :

"ଏଭଳି ପ୍ରଶ୍ନ ଗୁଡ଼ିକୁ (ବିଶ୍ୱ ଯୁଦ୍ଧର ବିପଦ) ଗୋଟିଏ ଦେଶର ( ବିଶେଷ କରି ଜର୍ମାନ ଭଳି ଏକ ସାମ୍ରାଜ୍ୟବାଦୀ ଦେଶର) ଜନଗଣଙ୍କର ସ୍ୱାର୍ଥ ଦୃଷ୍ଟିକୋଣରୁ ରାଜନୈ-ତିକ ଭାବେ ବିଚାର କଲେ ଭୁଲହେବ । ବରଂ ଏହାକୁ ବିଶ୍ୱର ଦଳିତ ଜନଗଣଙ୍କର ସ୍ୱାର୍ଥ ବୋଲି ଭାବି (ଏକ ଖାଣ୍ଟି ଅନ୍ତର୍ଜାତୀୟତାବାଦୀ ଭାବେ ) ରାଜନୈତିକ ପଥ ନିରୂପଣ କଲେ ଭଲ ହେବ । [" It is wrong to approach such questions ( the danger of world war ) from the point of view of the intersets of the people of any one Country ( especially an imperialist metropole country like W. Germany. ) Instead we must stand for some thing differnt and genuidely inter nationalist - app-roaching politics from the interests of the appressed people

of the whole world."— A world to win, 2nd Issue of 1985 P.P 86. ]

ବନ୍ (Bonn)ରେ ନଭେମ୍ବର- ୨୯ ତାରିଖ ହେଉଛି ଶାସକ ଶ୍ରେଣୀ ପାଇଁ ଏକ ମର୍ମନ୍ତୁଦ ପରାଜୟ । ସେମାନେ ଯାହା ଭାବୁଥିଲେ ଏହି ଦିନରେ NATO Bloody Pactର Designକୁ Democratic Seal ମାରି ଯୁଦ୍ଧ-ବିରୋଧୀ ଆନ୍ଦୋଳନକୁ ବିଶ୍ୱଆଖି ଆଗରେ ଭାଙ୍ଗି ଦେବାପାଇଁ, ଦବାଇ ଦେବା ପାଇଁ ଏବଂ ଲୋପ କରିଦେବା ପାଇଁ କିନ୍ତୁ ତାହା ହେଲ ନାହିଁ । ବରଂ ସେମାନଙ୍କର Democratic seal ବନ୍ର ରାସ୍ତାମାନଙ୍କରେ ପଦଦଳିତ ହେଲା । ଦୁର୍ଭାଗ୍ୟ ବଶତଃ, ଶାସକ ଶ୍ରେଣୀ ଦ୍ୱାରା ସ୍ୱୀକୃତ ଶାନ୍ତିକାମୀ ଆନ୍ଦୋଳନକାରୀ ନେତାମାନେ ଯାହା ଆନ୍ଦୋଳନକୁ ଆୟତ୍ତ ମଧ୍ୟରେ ରଖି ସେମାନଙ୍କୁ ସାହାଯ୍ୟ କରିଆନ୍ତେ ତାହା ମଧ୍ୟ ହେଲା ନାହିଁ । ଯେତେବେଳେ ଏହି ସରକାରୀ ସ୍ୱୀକୃତ ନେତାମାନେ ହେହ୍‌ଦନ ପାର୍ଖ କୌଣସି ଜନଗଣଙ୍କୁ ନ ପ୍ରବର୍ତ୍ତାଇ ପାର୍ଲିଆମେଣ୍ଟକୁ ଘେରାଉ କରିବେ ବୋଲି ଆଲୋଚନା କରୁଥିଲେ ଠିକ୍ ସେହି ସମୟରେ କର୍ମୀମାନେ (ଯେଉଁମାନେ କି ସମସ୍ତ ଉପାୟରେ ଜନଗଣଙ୍କୁ ପ୍ରବର୍ତ୍ତାଇଛନ୍ତି ) ପାର୍ଲିଆମେଣ୍ଟକୁ କବ୍ଜା କରିବା ପାଇଁ କହୁଥିଲେ ।

ବାସ୍ତବରେ ପାର୍ଲିଆମେଣ୍ଟ ଏହିମାନଙ୍କ ଦ୍ୱାରା ଦଖଲ ହୋଇଥିଲା । ସାରା ପଶ୍ଚିମ ଜର୍ମାନ ଏବଂ ବିଶ୍ୱରେ ଟେଲିଭିଜନର ପରଦା ଉପରେ ଏବଂ ସମସ୍ତ ସମ୍ବାଦ-ପତ୍ର ମାନଙ୍କର ଆଗ ପୃଷ୍ଠାରେ "ବନ୍ର ଯୁଦ୍ଧ" (Battle of Bonn) ଆନ୍ଦୋଳିତ ହେଲା । "ଗଣତନ୍ତ୍ର ପାଇଁ ଏକ Normal Day" ର ସ୍ୱପ୍ନ ଶାସକ ଶ୍ରେଣୀ ପ୍ରଭାତର ପ୍ରଥମ ରଶ୍ମିରୁ ହିଁ ତ୍ୟାଗ କରିବାକୁ ବାଧ୍ୟ ହେଲା । ହଜାର ହଜାର ବିକ୍ଷୋଭକାରୀ ସରକାରୀ ସ୍ୱୀକୃତ ନେତାମାନଙ୍କୁ ଖାତିର ନକରି, ବିକ୍ଷୋଭର ନିର୍ଦ୍ଧାରିତ ଆୟତ୍ତାଧୀନ ସୀମାକୁ ଲଂଘି ସରକାରୀ ପାର୍ଲିଆମେଣ୍ଟର ଗାଦି ଉପରେ ମାର୍ଚ୍ଚ କରି ଚାଲିଗଲେ । ଶାସକ ଶ୍ରେଣୀର ସ୍ୱୀକୃତ ଶାନ୍ତିକାମୀ ଆନ୍ଦୋଳନକାରୀ ମାନେ ଭୟ ଓ ଲଜ୍ଜାରେ ଲୁହ ବୁହା ଗ୍ୟାସ ଓ water-cannon ଧରିଥିବା ପୋଲିସର ଉହାଡରେ ରହିଲେ । ଘଣ୍ଟା ଘଣ୍ଟା ଧରି ସେମାନେ ବିକ୍ଷୋଭକାରୀ ମାନଙ୍କ ସଙ୍ଗେ ଲଢ଼େଇ କଲେ ଯେ ରାସ୍ତାକୁ ଖୋଲା ରଖିବା ପାଇଁ ଏବଂ ଦଖଲ କରିଥିବା ସ୍ଥାନକୁ ଛାଡ଼ି ଦେବା ପାଇଁ । ଏବଂ ରେଡ଼ିଓ ଓ ଟେଲିଭିଜନ୍‌ରେ ପ୍ରସାରିତ ବୁଣ୍ଡେଷ୍ଟାଗ୍ (Bundestag)ରେ ଚାଲିଥିବା ତର୍କ ବିତର୍କକୁ ଶୁଣିବା ପାଇଁ । କିନ୍ତୁ କିଛି କାମ କଲା ନାହିଁ ।

ଏଭଳି ଦୃଶ୍ୟ ପଶ୍ଚିମ ଜର୍ମାନ୍ ଇତିହାସରେ ବିରଳ । ପ୍ରଥମ ଥର ପାଇଁ ଅବାଧ "ନାଗରିକ" ମାନଙ୍କୁ ଘଉଡାଇ ଦେବା ପାଇଁ ପୋଲିସ୍‌କୁ water cannon ବ୍ୟବହାର କରିବାକୁ ପଡ଼ିଥିଲା ।

Green party ଯାହାର କି କିଛି ସଦସ୍ୟ ମାନେ ପାର୍ଲିଆମେଣ୍ଟର ସଭ୍ୟ)ର କିଛି ଦଳ ଚଳିଆ କର୍ମୀମାନେ କହିଲେ ଯେ ପାର୍ଲିଆମେଣ୍ଟ ଡାମସାରେ ଭାଗ ନେଇ କିଛି ଲାଭ ନାହିଁ । ବରଂ ବିକ୍ଷୋଭକାରୀ ମାନଙ୍କ ସହିତ ଯୋଗ ଦେଲେ ଫଳପ୍ରଦ ହେବ । ସେମାନଙ୍କର କହିବାର ଉଦ୍ଦେଶ୍ୟ ଥିଲା ଯେ ସେମାନଙ୍କର ନେତା ପାର୍ଲିଆମେଣ୍ଟ ଭୋଟରେ ଭାଗନେଲେ ମଧ୍ୟ କ୍ଷେପଣାସ୍ତ୍ର ସପକ୍ଷରେ ଅଧିକ ଭୋଟ ନିଶ୍ଚୟ ଆସିବ । କିନ୍ତୁ ଏଭଳି ପ୍ରସ୍ତାବ "ଚକ୍ରାନ୍ତ ବାହାରେ" ବୋଲି କହି ସଂଖ୍ୟା ଗରିଷ୍ଠ ନେତା ମାନେ ତୀବ୍ର ଭାବେ ଏହାକୁ ଖଣ୍ଡନ କଲେ । ସେହି ନେତା ମାନେ ଯୁକ୍ତି ବାଢ଼ିଲେ ଯେ ସେମାନେ ଲୋକମାନଙ୍କ ଦ୍ୱାରା ନିର୍ବାଚିତ । ଲୋକମାନଙ୍କ ପ୍ରତି ତାଙ୍କର କର୍ତ୍ତବ୍ୟ ଅଛି । ତେଣୁ ସେମାନେ ପାର୍ଲିଆମେଣ୍ଟ ଭୋଟରେ ଭାଗ ନେବେ ।

ଏହି ସମସ୍ତ ଘାତ ପ୍ରତିଘାତ ଭିତରେ ବିକ୍ଷୋଭକାରୀ ମାନଙ୍କ ସଭା ଆଗରେ ଚାଲିଥିଲେ Anti-Imperialist Contigent (ATIF+WWIC) । ତୁର୍କିର ସର୍ବହରା ମାନେ ନାଲି ପତାକା ସହିତ ଏକ ବ୍ୟାନାର୍ ଧରି ଚାଲିଥିଲେ ଯେଉଁ ବ୍ୟାନାରରେ କି ଇଂରାଜୀ, ଜର୍ମାନ୍ ଓ ତୁର୍କି ଭାଷାରେ ଲେଖାଥିଲା ; "A world without Imperialism Not An Imperialist world war." ଏହି ବ୍ୟାନାର ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କଲା । ସର୍ବହରା ଶ୍ରେଣୀର ଏହି Banner ଲକ୍ଷ ଲକ୍ଷ ମଧ୍ୟବିତ୍ତ ଶ୍ରେଣୀ ବିକ୍ଷୋଭକାରୀ ମାନଙ୍କୁ ମଧ୍ୟ ପ୍ରଭାବିତ କଲା ।

ଅଟୋନୋମେନ୍ ମାନଙ୍କ ମଧ୍ୟରେ ଦୋଦୁଲ୍ୟତା ଦେଖା ଦେଲା । ସେମାନେ ଏହି ନଭେମ୍ବର-୨୨ର ପ୍ରଧାନ କାମରେ ଅଂଶ ଗ୍ରହଣ କରିବେ କି ନାହିଁ ଚିନ୍ତା କଲେ । ବିଶେଷ କରି ବିକ୍ଷୋଭକୁ ନେତୃତ୍ୱ ଦେଉଥିବା ମାର୍କ୍ସବାଦୀ-ଲେନିନ୍‌ବାଦୀ କର୍ମୀମାନଙ୍କ ସହ ଖୋଲା ଖୋଲି ଭାବେ ମିଶିଯିବା ପାଇଁ ସେମାନେ କୁଣ୍ଠାବୋଧ କଲେ ।

ବୁଣ୍ଡେଷ୍ଟାଗ୍ ସାମ୍ନାରେ ୨/୩ ଘଣ୍ଟା ଲଢ଼େଇ ହେବା ପରେ ପ୍ରାୟ ଏକ ହଜାର ବିକ୍ଷୋଭକାରୀଙ୍କୁ ନେଇ ଆଉ ଏକ ଶୋଭାଯାତ୍ରା ବାହାରିଲା Elsalvader ର Embassy ଓ ଅନ୍ୟାନ୍ୟ political target କୁ କବ୍ଜା କରିବା ପାଇଁ । ଏହି ଶୋଭାଯାତ୍ରାର ଆଗରେ "ନବମ ଦଶକର ବିପ୍ଳବ ପାଇଁ ଆଗେଇ ଚାଲ" ("Revolution in the'80s-Go For It!") ର ବ୍ୟାନାର ଧରି Revolutionary Communist Youth League (RCP, U.S.A. ର Youth Group) ଆଗେଇ ଚାଲିଲା ।

## ଫ୍ରାଙ୍କ୍‌ଫର୍ଟ ଘଟଣା (Frankfurt Incident) :

ଡିସେମ୍ବର ଶେଷ ସପ୍ତାହରେ କ୍ଷେପଣାସ୍ତ୍ର ବସାଇବାର ଯୋଜନା ଚାଲିଲା । କ୍ଷେପଣାସ୍ତ୍ରକୁ କେନ୍ଦ୍ର କରି ସଂଗ୍ରାମ ବଢ଼ିଚାଲିଲା । ପାରସିଂ-୨ କ୍ଷେପଣାସ୍ତ୍ରର Repair

Depot ଟର୍ମିନାଲ୍‌ରେ ଅର୍ଥାତ୍ ଫ୍ରାଙ୍କ୍‌ଫର୍ଟରେ ଦୀର୍ଘ ଦିନ ଧରି ଦୁର୍ଦ୍ଦାନ୍ତ ଲଢ଼େଇ ଚଳାଇଲେ । ମୁଟ୍‌ଲଙ୍ଗେନ୍‌ରେ ଜନ ଜାଣ ସ୍ୱୀକୃତ ଆନ୍ଦୋଳନକାରୀ ମାନେ ଚଉବାଟିଆ ପଦଯାତ୍ରାର ଯୋଜନା କରିଥିଲେ ଏବଂ ବିକ୍ଷୋଭକାରୀ ମାନଙ୍କୁ ଘାଟୀ ଠାରୁ ଶହ ଶହ ମିଟର ଦୂରରେ ରଖିବା ପାଇଁ ଜର୍ମାନ ଶାସକ ଯେଉଁ ନୂତନ କମାଣ୍ଡୋଜ୍ ମାନ ଉଠାଇଥିଲେ WWICର ନେତୃତ୍ୱରେ ପରାଜିତ ବିକ୍ଷୋଭକାରୀ ମାନେ ତାହା ଭାଙ୍ଗି ଚୁରମାର୍ କରି ଏକ ଘଟଣା ସୃଷ୍ଟି କରିଥିଲେ ।

ଏଭଳି ପଦକ୍ଷେପ ମାନ ସହିତ ବିଶ୍ୱଯୁଦ୍ଧ, ଏହାର କାରଣ ଏବଂ ଦୂରୀକରଣ ସଂପର୍କରେ ATIF ଓ WWIC ବିଭିନ୍ନ ଧରଣରେ ଶକ୍ତିକୁ ନେଇ ଏକ ବ୍ୟାପକ ଏବଂ କ୍ରମାଗତ ସମ୍ମେଳନ ଆରମ୍ଭ କରିଥିଲେ । ବର୍ଲିନ୍ ନଗରୀରେ ତୁର୍କିର ଶ୍ରମିକ ଅର୍ଗାନାଇଜେସନ୍, Squallers, ଗ୍ରୁପ୍, ଗ୍ରୀନ୍ ପାର୍ଟିର ସମର୍ଥକ ଇତ୍ୟାଦି ୧୫୦ ପ୍ରତିନିଧି ମାନଙ୍କୁ ନେଇ ଏକ ସମ୍ମେଳନର ଆୟୋଜନ କରିଥିଲେ । ସେମାନେ ଏ ସମସ୍ତ ପ୍ରଶ୍ନ ସହ ଏକ ବିପ୍ଳବର ଆବଶ୍ୟକତା ଓ ସମ୍ଭାବନା ସଂପର୍କରେ ଗଭୀର ଭାବେ ଚର୍ଚ୍ଚା କରିଥିଲେ ।

## ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟୀ ବନ୍ଦ ହୋଇଗଲେ କ'ଣ ଏ ସଂଗ୍ରାମ ବନ୍ଦ ହୋଇଯିବ ?

ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟୀ ହେବାର ପ୍ରସ୍ତାବ ପରଠାରୁ ଏବଂ ବିଶେଷ କରି ଏଠାରେ ଘାଟୀ ହେବାର ନିଷ୍ପତ୍ତି ପରଠାରୁ କେତେକ ବିରୋଧୀ ଦଳ, ବାମ ଏପରିକି ନକ୍ସାଲ ପନ୍ଥୀ ନେତା ମାନେ କ୍ଷେପଣାସ୍ତ୍ର ଘାଟୀ ବିରୋଧୀ ଆନ୍ଦୋଳନ ଆରମ୍ଭ କଲେ । ଯଦି ବାଲିଆପାଳରେ ଘାଟୀ ନହୁଏ ବା ଓଡ଼ିଶାର ଅନ୍ୟ କୌଣସି ଯାଗାରେ ନହୁଏ ବା ଭାରତରେ ଆଉ କୌଣସି ଯାଗାରେ ଘାଟୀ ନହୁଏ, ତେବେ ଏ ସମସ୍ତ ଆନ୍ଦୋଳନକାରୀ ନେତାମାନଙ୍କର ଆନ୍ଦୋଳନ ବନ୍ଦ ହୋଇଯିବ । କାରଣ, ଏହି ଆନ୍ଦୋଳନକାରୀ ନେତାମାନଙ୍କର କୌଣସି ଲେଖା, ଭାଷଣ କିମ୍ବା ସ୍ଲୋଗାନ୍‌ରେ ଭବିଷ୍ୟତରେ (କ୍ଷେପଣାସ୍ତ୍ର ଘାଟୀ ନହେଲେ ମଧ୍ୟ) ପୁନଶ୍ଚ ଆନ୍ଦୋଳନ ଚାଲୁ ରହିବ କି ନାହିଁ ଏ ସଂପର୍କରେ କୌଣସି ସ୍ପଷ୍ଟ ଆଭାସ୍ ମିଳେନା । ଯଦି ସେମାନଙ୍କର ପରିକଳ୍ପନାରେ ଯେଉଁ କାରଣ ପାଇଁ ଭବିଷ୍ୟତରେ ଆନ୍ଦୋଳନର ନିରବଚ୍ଛିନ୍ନତା (Continuity)କୁ ରକ୍ଷି ପାରିଥାଆନ୍ତେ ସେହି କାରଣ ପାଇଁ କ୍ଷେପଣାସ୍ତ୍ର ଘାଟୀ ହେବାର ପ୍ରସ୍ତାବ ପୂର୍ବରୁ ମଧ୍ୟ ସେମାନେ ଆନ୍ଦୋଳନ ଆରମ୍ଭ କରି ପାରିଥାଆନ୍ତେ । ବାସ୍ତବରେ ତାହା ସେମାନେ ପାରିନାହାନ୍ତି କିମ୍ବା ଏଭଳି ପ୍ରଶ୍ନ ଉଠାଇ ନାହାନ୍ତି । ତେଣୁ ସେମାନଙ୍କର ଆନ୍ଦୋଳନର ଦିଗ କେବଳ କ୍ଷେପଣାସ୍ତ୍ର ଘାଟୀକୁ ନେଇ ସୀମିତ

ବୋଲି ମନେ ହୁଏ । ଏହାର କାରଣ ହେଉଛି ବିରୋଧୀ ଭୋଟ ପନ୍ଥୀ ଦଳଙ୍କର ନେତାମାନେ ଆଗାମୀ ଦିନର ଭୋଟ୍ କାରଣ ଉପରେ ଆଖି ।

## ଓଡ଼ିଶାକୁ ସାମରିକ ଘାଟୀ ମୁକ୍ତ କର :

ପ୍ରବନ୍ଧ ଉଲ୍ଲେଖ କରାଯାଇଛି ଯେ ସମସ୍ତ ସାମ୍ରାଜ୍ୟବାଦୀ ଶକ୍ତି (ପାଶ୍ଚାତ୍ୟ ତଥା ରୁଷ) ସେମାନଙ୍କ ମଧ୍ୟରେ ସାଲିସ୍ ଅନୁଯାୟୀ ଭାରତରେ ବିଚରଣ କରୁଛନ୍ତି । ଅର୍ଥନୈତିକ, ରାଜନୈତିକ, ସାଂସ୍କୃତିକ ତଥା ସାମରିକ କ୍ଷେତ୍ରମାନଙ୍କରେ ସମସ୍ତେ ସେମାନଙ୍କର ସ୍ଥିତିର ଭାରସାମ୍ୟ ରକ୍ଷା କରୁଛନ୍ତି । ଏ ଭାରସାମ୍ୟ ଯେ କେଉଁ ମୁହୂର୍ତ୍ତରେ ନଷ୍ଟ ହେବ ତାହା କହିବା ମୁସ୍କିଲ । କିନ୍ତୁ ଆନ୍ତର୍ଜାତୀୟ କ୍ଷେତ୍ରରେ ସେମାନଙ୍କ ମଧ୍ୟରେ ଦ୍ଵନ୍ଦ୍ଵ ଏତେ ତୀବ୍ର ହେଉଛି ଯେ ତୃତୀୟ ବିଶ୍ୱଯୁଦ୍ଧ ବେଶି ଦୂର ନୁହେଁ ।

ବିଶ୍ୱଯୁଦ୍ଧ ଲାଗିଗଲେ ଭାରତ କେବଳ ପାଶ୍ଚାତ୍ୟ ସାମ୍ରାଜ୍ୟବାଦର ଗୋଠକୁ ଚାଲିଯିବ କିମ୍ବା ସୋଭିଏତ ସାମ୍ରାଜ୍ୟବାଦର ଗୋଠକୁ ଚାଲିଯିବ ତାହା ଆଗରୁ କହିବା ମୁସ୍କିଲ । ଯେତେ ଦୂର ମନେ ହୁଏ ଆମେରିକା ଓ ରୁଷ ଏହି ଦୁଇ ମହାଶକ୍ତି ଦ୍ଵାରା ଭାରତ ଖଣ୍ଡ ବିଖଣ୍ଡିତ ହୋଇଯିବ । ଭାରତ ମହାଭାରତ ଯୁଦ୍ଧ କ୍ଷେତ୍ର ବନିଯିବ । ସେତେବେଳେ ଓଡ଼ିଶାର ପରିସ୍ଥିତି କ'ଣ ହେବ ?

ଇତି ମଧ୍ୟରେ ଭୋଟ-ପନ୍ଥୀ ଦଳର ନେତା ମାନେ ତଥା ନକ୍ସାଲ ପନ୍ଥୀ ନେତା ମାନେ ଓଡ଼ିଶାରେ କେତୋଟି ସାମରିକ ଘାଟୀ ଅଛି ବର୍ଣ୍ଣନା କରିଯାଇଛନ୍ତି ଏବଂ ବିଶ୍ୱଯୁଦ୍ଧ ଲାଗିଗଲେ ସମସ୍ତ ଓଡ଼ିଶା ଏକ ସାମରିକ ଅଞ୍ଚଳ ହୋଇଯିବ ତଥା ଓଡ଼ିଶାବାସୀ ସବୁ ସମୟରେ ଏକ ଯୁଦ୍ଧ ଟେନସନ୍ ଭିତରେ ରହିବେ ଏକଥା ମଧ୍ୟ ବର୍ଣ୍ଣନା କରିଯାଇଛନ୍ତି । ବର୍ତ୍ତମାନ ପ୍ରଶ୍ନ ଉଠେ : ବାଲିଆପାଳରେ କିମ୍ବା ଓଡ଼ିଶାର କୌଣସି ଅଞ୍ଚଳରେ କ୍ଷେପଣାସ୍ତ୍ର ଘାଟୀ ହେବାର ପ୍ରସ୍ତାବ ଯଦି ବାତିଲ ହୋଇଯାଏ, ତେବେ କ'ଣ ଓଡ଼ିଶା ଆଗାମୀ ବିଶ୍ୱଯୁଦ୍ଧରେ ଆଉ ସାମରିକ ଅଞ୍ଚଳ ହୋଇ ରହିବ ନାହିଁ କିମ୍ବା ଓଡ଼ିଶାବାସୀ ସବୁ ସମୟରେ ଯୁଦ୍ଧ ଟେନସନ୍ ଭିତରେ ରହିବେ ନାହିଁ ? ମନେ ହୁଏ, ଏ ପ୍ରଶ୍ନ ବିରୋଧୀ ଦଳ ନେତାମାନଙ୍କ ମନରେ କେବେ ଉଠିନାହିଁ । ଯଦି ଉଠିଥାଆନ୍ତା ତେବେ ସେମାନଙ୍କର ସ୍ଲୋଗାନ୍ "ବାଲିଆପାଳରୁ କ୍ଷେପଣାସ୍ତ୍ର ଘାଟୀ ଉଠିଯାଉ" ହେବା ସଙ୍ଗେ ସଙ୍ଗେ "ଓଡ଼ିଶାକୁ ସାମରିକ ଘାଟୀ ମୁକ୍ତ କର" ସ୍ଲୋଗାନ ବି ହୋଇଥାଆନ୍ତା । ଫଳରେ ଗଣ ଆନ୍ଦୋଳନ ଖାଲି ବାଲିଆପାଳ ଅଞ୍ଚଳରେ ସୀମିତ ନରହି ଏତେ ବେଳକୁ ଓଡ଼ିଶା ବ୍ୟାପି ହୋଇ ସାରିଥାଆନ୍ତା ।

ବାସ୍ତବରେ ଯଦି ବାଲିଆପାଳରେ କିମ୍ବା ଓଡ଼ିଶାର କୌଣସି ଅଞ୍ଚଳରେ କ୍ଷେପଣାସ୍ତ୍ର ଘାଟୀ ହେବା ପ୍ରସ୍ତାବ ବନ୍ଦ ହୋଇଯାଏ, ତେବେ ଏ ଯେଉଁ ସଂଗ୍ରାମର

ସୂତ୍ରପାତ ହୋଇଛି ତାହା ବନ୍ଦ ହୋଇଯିବ ନାହିଁ । କାରଣ, ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ଯଥା ମୁନାବେଡ଼ା, ଗୋପାଳପୁର, ଚଲିକା, ଭୁତବାଟିଆ, ଭୁଦପୁର, ରାଜ୍‌ଗୋବିନ୍ଦପୁର, ଖଣ୍ଡିତାଳା ଇତ୍ୟାଦିରେ ସାମରିକ ଘାଟିମାନ ମଧ୍ୟ ରହୁଛି । ତେଣୁ ଯେକୌଣସି ମୁହୂର୍ତ୍ତରେ ଓଡ଼ିଶା ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ରଣ କ୍ଷେତ୍ରରେ ପରିଣତ ହେବାର ସମ୍ଭାବନା ରହୁଛି ଏବଂ ଯେ କୌଣସି ମୁହୂର୍ତ୍ତରେ ଓଡ଼ିଶା ଶ୍ମଶାନରେ ପରିଣତ ହେବାର ସମ୍ଭାବନା ରହୁଛି । ଏ କ୍ଷେତ୍ରରେ ଓଡ଼ିଆ ଜାତି ବଞ୍ଚିରହିବାକୁ ହେଲେ ଓଡ଼ିଶାକୁ ସାମରିକ ଘାଟି ମୁକ୍ତ କରିବା ସକାଶେ ସଂଗ୍ରାମ ଛଡ଼ା ତା'ର ଅନ୍ୟ ଗତି ନାହିଁ ।

## ଓଡ଼ିଶା ଜାତୀୟ ଆନ୍ଦୋଳନର ପୁନରୁତ୍ଥାନ :

ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ ସାମ୍ରାଜ୍ୟବାଦ ତଥା ତାହାର ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀ ବିରୁଦ୍ଧରେ ଓଡ଼ିଶାର ଜନଗଣ ତା'ର ଭାଷା ପାଇଁ, ତା'ର ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଅନବରତ ଆନ୍ଦୋଳନ କରି ଆସିଛି । ତଥାକଥିତ ସ୍ୱାଧୀନତା ପରେ ବା ଭାରତ ତଥା ଓଡ଼ିଶା ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ନବ-ଉପନିବେଶରେ ପରିଣତ ହେବା ପରେ ସର୍ବଭାରତୀୟ ଶାସକ ଶ୍ରେଣୀ ଓଡ଼ିଶାର ଭାଷାକୁ ସଂକୁଚିତ କରୁଛି, ତା'ର କେତେକ ଅଞ୍ଚଳ ଏ ପର୍ଯ୍ୟନ୍ତ ଛଡ଼ାଇ ରଖିଛି, ତା'ର ଅର୍ଥନୀତିକୁ ମାଡ଼ୁଆରି ସଂପ୍ରଦାୟ ଦ୍ୱାରା ପଂଗୁ କରି ରଖିଛି ଏବଂ ଓଡ଼ିଶାର ରାଜନୀତିକୁ ସଂପୂର୍ଣ୍ଣ ଭାବେ ସାମ୍ରାଜ୍ୟବାଦୀ ଶକ୍ତିର ସ୍ୱାର୍ଥ ଦିଗରେ ନିୟନ୍ତ୍ରଣ କରୁଛି । ଏହା ବିରୁଦ୍ଧରେ ଓଡ଼ିଶାର ଜନଗଣ, ଛାତ୍ର ଓ ଯୁବକ ସମସ୍ତ ସମୟରେ ଜାତୀୟ ଆନ୍ଦୋଳନ ଚଳାଇ ଆସିଛନ୍ତି । ଶେଷରେ ଏହି ଶାସକ ଶ୍ରେଣୀ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଯୁଦ୍ଧଖୋର ନୀତି ପାଇଁ ସାମରିକ ଭାବେ ଓଡ଼ିଶାକୁ ଶ୍ମଶାନ କରିବାକୁ ବସିଛି ।

ବାଲିଆପାଳ କ୍ଷେପଣାସ୍ତ୍ର ଘାଟି ବିରୁଦ୍ଧରେ ବାଲିଆପାଳ ଜନଗଣଙ୍କର ଯେଉଁ ଆନ୍ଦୋଳନ ଆରମ୍ଭ ହୋଇଛି ତାହା କେବଳ ସମରିକବାଦ ବିରୁଦ୍ଧରେ ମାନବିକ ଅଭିମୁଖୀ ଆନ୍ଦୋଳନ ନୁହେଁ, ଅଧିକନ୍ତୁ ଏହା ଅଜାଣତରେ ଓଡ଼ିଶାର ଜାତୀୟ ଆନ୍ଦୋଳନର ପୁନରୁତ୍ଥାନ ମାତ୍ର । ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଅର୍ଥନୈତିକ, ରାଜନୈତିକ, ସାଂସ୍କୃତିକ ତଥା ସାମରିକ ଶୋଷଣ କବଳରୁ ଓଡ଼ିଶାକୁ ମୁକ୍ତ କରିବାକୁ ହେଲେ ଏହି ବାଲିଆପାଳରେ ସୂତ୍ରପାତ ହୋଇଥିବା ଅସଚେତନ ଜାତୀୟ ଆନ୍ଦୋଳନକୁ ଓଡ଼ିଶା ବ୍ୟାପି ସଚେତନ ଜାତୀୟ ଆନ୍ଦୋଳନରେ ପରିଣତ କରିବାକୁ ପଡ଼ିବ । ପୁନଶ୍ଚ; ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ସାମରିକ ଶୋଷଣ ଯେହେତୁ ସେମାନଙ୍କର ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀ ଜରିଆରେ

ହେଉଛି, ତେଣୁ ଓଡ଼ିଶାର ସାମ୍ରାଜ୍ୟବାଦ-ବିରୋଧୀ ଜାତୀୟ ମୁକ୍ତି ଆନ୍ଦୋଳନ ଓଡ଼ିଶାକୁ ସର୍ବଭାରତୀୟ ଶାସକ ଶ୍ରେଣୀର ଶାସନ ଯନ୍ତ୍ରରୁ ଛିନ୍ନ କରିବାକୁ ପଡ଼ିବ ଏବଂ ଓଡ଼ିଶା ଭାରତୀୟ ଶାସନରୁ ମୁକ୍ତିଲାଭ କରି ଏକ ସ୍ୱତନ୍ତ୍ର ସ୍ୱାଧୀନ ଜାତୀୟ ରାଜ୍ୟ ଭାବରେ ଆତ୍ମନିର୍ଭରଶୀଳ ହୋଇ ଗଢ଼ି ଉଠିବ ।

## ଓଡ଼ିଶା କ'ଣ ପଞ୍ଜାବ ବନିବ ?

ଆପଣମାନଙ୍କ ମଧ୍ୟରେ ପ୍ରଶ୍ନ ଉଠୁଥିବ ଯେ ପଞ୍ଜାବରେ ଶିଖ୍ ମାନେ ଯେପରି ଭାରତରୁ ଅଲଗା ହୋଇଯାଇ ସ୍ୱତନ୍ତ୍ର "ଖଲିସ୍ଥାନ" ଗଢ଼ିବା ପାଇଁ ଆନ୍ଦୋଳନ କରୁଛନ୍ତି ଆମେ କ'ଣ ସେହିଭଳି ଓଡ଼ିଶାକୁ ଆଉ ଏକ ପଞ୍ଜାବରେ ପରିଣତ କରିବା ? ଓଡ଼ିଶାର ସାମ୍ରାଜ୍ୟବାଦ ବିରୋଧୀ ଜାତୀୟ ମୁକ୍ତି ଆନ୍ଦୋଳନ ନିଶ୍ଚିତ ରୂପେ ଓଡ଼ିଶାକୁ ଆଉ ଏକ ପଞ୍ଜାବରେ ପରିଣତ କରିବା ଆବଶ୍ୟ, "ଓଡ଼ିଶାକୁ ଆଉ ଏକ ପଞ୍ଜାବ କରିବା" ର ସ୍ଲୋଗାନ୍ ପ୍ରଥମ କରି ଏଠାରେ ଘୋଷିତ ହେଉନାହିଁ । "ଓଡ଼ିଶାକୁ ଦ୍ୱିତୀୟ ପଞ୍ଜାବ କରିବା" ର ସ୍ଲୋଗାନ ପ୍ରଥମେ ବାଲିଆପାଳର କଂଗ୍ରେସ୍ (ଆଇ) ବିଧାୟକ ଶ୍ରୀ ଯୁଧିଷ୍ଠିର ଜେନା ଘୋଷଣା କରିଛନ୍ତି : " ବାଲିଆପାଳ ଅଞ୍ଚଳର କଂଗ୍ରେସ୍ (ଆଇ) ବିଧାୟକ ଶ୍ରୀ ଯୁଧିଷ୍ଠିର ଜେନା ଗତ ନିର୍ବାଚନ ସମୟରେ ପ୍ରତିଜ୍ଞା କରିଥିଲେ ଯେ ଯଦି ପ୍ରସ୍ତାବିତ ଜାତୀୟ ଟେଷ୍ଟ୍ ରେଞ୍ଜ୍ ପ୍ରକଳ୍ପ କାର୍ଯ୍ୟକାରୀ ହୁଏ ତେବେ ସେ ଦ୍ୱିତୀୟ ପଞ୍ଜାବ ଏବଂ ଆସାମ ସୃଷ୍ଟି କରିବେ । ସେହି ଯୁଧିଷ୍ଠିର ଜେନା ଗତ ଜୁନମାସ ୧୨ ତାରିଖ ରାତିରେ ତାଙ୍କ ଗ୍ରାମ ରାଉତରାରେ ୧୦ ହଜାରରୁ ଅଧିକ ଲୋକ ଦ୍ୱାରା ଆକ୍ରମିତ ହୋଇଥିଲେ " (" Judhisthir jena, the cong (I) -MLA from this (Baliapal) area who, during the last Assembly Election vowed to create a second Punjab and Assam if the project (N.T.R.) is implemented, was mobbed by over 10, 000 people in the night of june-12, in his village, Routara"—Chhayakant Nayak, The Good Earth, Environment, The Illustrated weekly of India, October, 5-11, 1986 )

ଶ୍ରୀ ଯୁଧିଷ୍ଠିର ଜେନା ତାଙ୍କର ସ୍ୱାର୍ଥ ପାଇଁ ଯେଉଁ "ଦ୍ୱିତୀୟ ପଞ୍ଜାବ" ର ଝଣ୍ଡା ଉଠାଇ ଥିଲେ ଏବଂ ତାଙ୍କର ସେହି ସ୍ୱାର୍ଥ ପାଇଁ ଯେଉଁ "ଦ୍ୱିତୀୟ ପଞ୍ଜାବ" ର ଝଣ୍ଡାକୁ ଆଜି ତଳେ ଫୋପାଡ଼ି ଦେଇଛନ୍ତି, ଆମେ ମେହନତୀ ଜନଗଣ ଆମ୍ଭମାନଙ୍କ ମୁକ୍ତି ପାଇଁ ସେହି ପତିତ " ଦ୍ୱିତୀୟ ପଞ୍ଜାବ " ର ଝଣ୍ଡାକୁ ଊର୍ଦ୍ଧ୍ୱରେ ତୋଳି ଧରି ଚାଲିବୁ ।

ଓଡ଼ିଶା ନିଶ୍ଚିତ ରୂପେ ଅନ୍ୟ ଏକ ପଞ୍ଜାବ ହେବ । କାରଣ ଓଡ଼ିଶା ସାମ୍ରାଜ୍ୟବାଦର ଦଲାଲ ସର୍ବ ଭାରତୀୟ ଶାସକ ଶ୍ରେଣୀର ଶାସନରୁ ଛିନ୍ନ ନହେଲେ ସାମ୍ରାଜ୍ୟବାଦର ସମସ୍ତ ପ୍ରକାରର ଶୋଷଣରୁ ମୁକ୍ତ ପାଇବ ନାହିଁ । ଓଡ଼ିଶା ଆତ୍ମନିର୍ଭରଶୀଳ ଭାବରେ, କୌଣସି ସାମ୍ରାଜ୍ୟବାଦୀ ଦେଶର ସାହାଯ୍ୟ ନନେଇ ସର୍ବଭାରତୀୟ ଶାସନ କବଳରୁ ମୁକ୍ତ ହେବ । ଏବଂ ଓଡ଼ିଶା ଆତ୍ମନିର୍ଭରଶୀଳ ଭାବରେ ତାହାର ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ ବିକାଶମାନ ହୋଇ କରାଇବ । ଏହା କୌଣସି ଧର୍ମଭିତ୍ତିକ ଜାତୀୟ ରାଜ୍ୟ ହେବ ନାହିଁ । ଏହା ଏକ ସଚ୍ଚା ଧର୍ମ ନିରପେକ୍ଷ, ଗଣତାନ୍ତ୍ରିକ ସ୍ୱାଧୀନ ରାଜ୍ୟ ହେବ ।

## ଓଡ଼ିଶାର ଜାତୀୟ ମୁକ୍ତି ଆନ୍ଦୋଳନ କ'ଣ ଅଣଓଡ଼ିଆ ବିରୋଧୀ ?

ଓଡ଼ିଶାର ଜାତୀୟ ମୁକ୍ତି ଆନ୍ଦୋଳନ କୌଣସି ଅଣଓଡ଼ିଆ ଜାତି ବିରୁଦ୍ଧରେ ନୁହେଁ । ଏହା ସାମ୍ରାଜ୍ୟବାଦୀ ଶତ୍ରୁମାନଙ୍କର ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀ ବିରୁଦ୍ଧରେ । ସାମ୍ରାଜ୍ୟବାଦୀ ଶତ୍ରୁମାନେ ଭାରତର ବିଭିନ୍ନ ଜାତିର ଜନଗଣ ମଧ୍ୟରୁ ବିଭିନ୍ନ ଗୋଷ୍ଠୀକୁ ତାଙ୍କର ବିଭିନ୍ନ ପ୍ରକାରର ଦଲାଲ ରୂପେ ପରିଣତ କରିଛନ୍ତି । ଉଦାହରଣ ସ୍ୱରୂପ, ସାଧାରଣତଃ ରାଜସ୍ଥାନ ଜାତିର ବଣିଆ ଗୋଷ୍ଠୀ କିମ୍ବା ଗୁଜରାଟ ଜାତିର ବଣିଆ ଗୋଷ୍ଠୀକୁ ଦଲାଲ-ବୃହତ୍-ପୁଞ୍ଜିପତି ଶ୍ରେଣୀ ତଥା ଦଲାଲ-ସର୍ବଭାରତୀୟ ବେପାରୀ ଶ୍ରେଣୀ ଭାବେ ଛିଡ଼ା କରାଇଥିବା ସ୍ଥଳେ, ପଶ୍ଚିମବଙ୍ଗ, ତାମିଲନାଡୁ ଓ କେରଳ ଇତ୍ୟାଦି ରାଜ୍ୟର ବୁଦ୍ଧିଜୀବୀ ଶ୍ରେଣୀର ଏକ ଅଂଶକୁ ସର୍ବଭାରତୀୟ-ଦଲାଲ-ଅମଲା ଶ୍ରେଣୀ ଭାବେ ଗଢ଼ିଥିବା ସ୍ଥଳେ, ବିଭିନ୍ନ ଜାତିର ପେଟି-ବୁର୍ଜୁଆ ବୁଦ୍ଧିଜୀବୀ ଶ୍ରେଣୀ ମଧ୍ୟରୁ ଏକ ଅଂଶକୁ ଦଲାଲ-ପ୍ରାଦେଶିକ-ଶାସକ-ଚାକର ଭାବେ ଛିଡ଼ା କରାଇଛନ୍ତି । ଓଡ଼ିଶାର ଜାତୀୟ ମୁକ୍ତି ଆନ୍ଦୋଳନରେ ଜନଗଣ ଯେତେବେଳେ ସଂଗ୍ରାମ ଚଳାଇବେ ସେତେବେଳେ ବିଭିନ୍ନ ସମୟରେ ଏହି ବିଭିନ୍ନ ଶ୍ରେଣୀ ବିରୁଦ୍ଧରେ ସଂଗ୍ରାମ ଚଳାଇବେ । ଯେତେବେଳେ ଏହା ସର୍ବଭାରତୀୟ ଦଲାଲ-ଏକଚାଟିଆ ବେପାରୀ ଶ୍ରେଣୀ ବିରୁଦ୍ଧରେ ସଂଗ୍ରାମ ଚଳାଇବେ ଏହି ଆନ୍ଦୋଳନ ସେତେବେଳେ ମୁଖ୍ୟତଃ ମାରୁଆଡ଼ୀ ସଂପ୍ରଦାୟ ବିରୁଦ୍ଧରେ ଯିବ । ଏହାର ଅର୍ଥ ନୁହେଁ ଯେ ଓଡ଼ିଆମାନଙ୍କର ଆନ୍ଦୋଳନ ରାଜସ୍ଥାନ ଜାତିର ଜନଗଣ ବିରୁଦ୍ଧରେ କିମ୍ବା ମାରୁଆଡ଼ୀ ସଂପ୍ରଦାୟର ସମସ୍ତ ଜନଗଣ ବିରୁଦ୍ଧରେ । ଠିକ୍ ସେହିଭଳି ଯେତେବେଳେ ଆନ୍ଦୋଳନ ଦଲାଲ-ସର୍ବଭାରତୀୟ-ଏକଚାଟିଆ-ପୁଞ୍ଜିପତି ଶ୍ରେଣୀ ବିରୁଦ୍ଧରେ ଚାଲିବ, ଏହା ମୁଖ୍ୟତଃ ଓଡ଼ିଶାରେ ଥିବା ଅଣ-ଓଡ଼ିଆ-ପୁଞ୍ଜିପତି ମାନଙ୍କ ବିରୁଦ୍ଧରେ ଚାଲିବ । ଏହାର ଅର୍ଥ ନୁହେଁ ଯେ ଏହି ଆନ୍ଦୋଳନ ଅଣଓଡ଼ିଆ ଜାତିର ସମସ୍ତ ଜନଗଣଙ୍କ ବିରୁଦ୍ଧରେ । ଠିକ୍ ସେହିପରି ଅମଲା ନେତୃତ୍ୱ ବିରୁଦ୍ଧରେ । ପୁନଶ୍ଚ, ଯେତେବେଳେ ଏହି ଆନ୍ଦୋଳନ ଓଡ଼ିଶାର ଶାସକ ସରକାର

ବିରୁଦ୍ଧରେ ଲଢ଼ିବ, ସେତେବେଳେ ଓଡ଼ିଶାର ଜନସାଧାରଣ ସାମ୍ରାଜ୍ୟବାଦର ଦଲାଲ ସରକାରରେ ଥିବା ଓଡ଼ିଆ ଜାତିର ଏକ ଅଂଶ ବିରୁଦ୍ଧରେ ସଂଗ୍ରାମ ଚଳାଇବେ । ତେଣୁ ଏହି ଜାତୀୟ ମୁକ୍ତି ଆନ୍ଦୋଳନ ଅଣ ଓଡ଼ିଆ ଜାତି ବିରୁଦ୍ଧରେ ନୁହେଁ । ଏହି ଆନ୍ଦୋଳନ ସାମ୍ରାଜ୍ୟବାଦୀ ଶକ୍ତି ମାନଙ୍କ ବିରୁଦ୍ଧରେ ଏବଂ ଏମାନଙ୍କର ଦଲାଲ ଶ୍ରେଣୀ ବିରୁଦ୍ଧରେ । ଏହି ଦଲାଲ ଖୋଦ୍ ଓଡ଼ିଆ ଜାତିର ହୋଇ ପାରେ କିମ୍ବା ଅଣ-ଓଡ଼ିଆ ଜାତିର ହୋଇ ପାରେ । ସାମ୍ରାଜ୍ୟବାଦୀ ଶକ୍ତି ମାନଙ୍କର ଏହି ସମସ୍ତ ବିଭିନ୍ନ ପ୍ରକାରର ଦଲାଲ ମାନେ ମିଳିତ ଭାବେ ଭାରତର ସମସ୍ତ ଜାତିର ଜନଗଣଙ୍କର ଶତ୍ରୁ, ଏବଂ ସେମାନେ ଭାରତର ପ୍ରତ୍ୟେକ ଜାତିର ବିକାଶ ପଥରେ ପ୍ରତିବନ୍ଧକ ।

ସାମ୍ରାଜ୍ୟବାଦୀ ଶକ୍ତି ଏହି ଆନ୍ଦୋଳନକୁ ଦଳନ କରିବା ପାଇଁ ଭାରତର ଜନଗଣଙ୍କ ସମ୍ମୁଖରେ ଏକ ସାଂପ୍ରଦାୟିକ-ରଙ୍ଗ ଦେବାକୁ ଅନବରତ ଚେଷ୍ଟା କରିବ ତଥା ବିଭିନ୍ନ ଜାତିର ଜନଗଣଙ୍କ ମଧ୍ୟରେ ସାଂପ୍ରଦାୟିକ ଦଙ୍ଗା ମଧ୍ୟ ସୃଷ୍ଟି କରିବ । ଏଥିପ୍ରତି ଭାରତର ସମସ୍ତ ମେହନତୀ ଜନଗଣ ସତର୍କ ରହିବା ଉଚିତ୍ । ଏବଂ ଭାରତର ସମସ୍ତ ମେହନତୀ ଜନଗଣ ପ୍ରତ୍ୟେକ ଜାତିର ଜାତୀୟ ମୁକ୍ତି ଆନ୍ଦୋଳନକୁ ସମର୍ଥନ କରିବା ସଙ୍ଗେ ସଙ୍ଗେ ସମସ୍ତ ପ୍ରକାରର ସାହାଯ୍ୟ ଦେବା ଉଚିତ୍ ।

## ଜାତୀୟ ମୁକ୍ତି ଆନ୍ଦୋଳନରେ ନେତୃତ୍ୱ :

ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ ଭାରତରେ ବିଭିନ୍ନ ଜାତିର ଜାତୀୟ ଆନ୍ଦୋଳନ କାହିଁକି ବାଧାପ୍ରାପ୍ତ ହେଲା । ବିଭିନ୍ନ ଜାତିର ଅଞ୍ଚଳର ଦଲାଲ ପୁଞ୍ଜିପତି ଶ୍ରେଣୀ ଯେଉଁମାନେ କି ନିଜର ସ୍ୱାର୍ଥ ପାଇଁ ଭାରତରେ ଜାତୀୟ ଆନ୍ଦୋଳନରେ ନେତୃତ୍ୱ ନେଇଥିଲେ ଏବଂ ସେମାନେ ସାମ୍ରାଜ୍ୟବାଦର ଅର୍ଥନୀତି ଓ ରାଜନୀତି ସଙ୍ଗେ ଛନ୍ଦାଥିବା ଯୋଗୁ ଏହି ଆନ୍ଦୋଳନକୁ କେବଳ ଭାଷା ଭିତ୍ତିକ ପ୍ରଦେଶ ମଧ୍ୟରେ ସୀମିତ କରି ରଖିଲେ । ଏହି ଆନ୍ଦୋଳନକୁ ସାମ୍ରାଜ୍ୟବାଦ-ବିରୋଧୀ-ଜାତୀୟ ମୁକ୍ତି ଆନ୍ଦୋଳନର ପର୍ଯ୍ୟାୟକୁ ନେଇ ବିଭିନ୍ନ ଜାତିକୁ ସ୍ୱତନ୍ତ୍ର ସ୍ୱାଧୀନ ରାଜ୍ୟରେ ପରିଣତ କରିବାକୁ ଅସମର୍ଥ ହେଲେ । ମଧ୍ୟବିତ୍ତ ଶ୍ରେଣୀର ବୁଦ୍ଧିଜୀବୀ ମାନେ ଯେଉଁମାନେ କି କେତେକ ରାଜ୍ୟରେ ଜାତୀୟ ଆନ୍ଦୋଳନ ଆରମ୍ଭ କରିଥିଲେ ସେମାନଙ୍କର ଦୂରଦୃଷ୍ଟି କୋଣର ଅଭାବରୁ ସେମାନେ ମଧ୍ୟ ସାମ୍ରାଜ୍ୟବାଦର ଚକ୍ରାନ୍ତରେ ଶରବ୍ୟ ହୋଇ ବିଭିନ୍ନ ବ୍ୟକ୍ତି-ପ୍ରଲୋଭନରେ ବଶବର୍ତ୍ତୀ ହୋଇ ଜାତୀୟ ଆନ୍ଦୋଳନକୁ ସେହି ଭାଷା ଭିତ୍ତିକ ପ୍ରଦେଶ-ଗଠନ ମଧ୍ୟରେ ସୀମିତ ରଖିଲେ ।

ପୁଞ୍ଜିବାଦ ସାମ୍ରାଜ୍ୟବାଦ ସ୍ତରରେ ଥିବା ହେତୁ ସର୍ବହରା ଶ୍ରେଣୀ ବ୍ୟତୀତ କୌଣସି ଶ୍ରେଣୀ ଜାତୀୟ ମୁକ୍ତି ଗଣତାନ୍ତ୍ରିକ ଆନ୍ଦୋଳନକୁ ସଂପୂର୍ଣ୍ଣ କରି ପାରିବ ନାହିଁ ।

ଏହା ମାର୍କସ୍‌ବାଦୀ-ଲେନିନ୍‌ବାଦୀ ମାନଙ୍କର ସିଦ୍ଧାନ୍ତ ଯାହାକି ଏବେ ବାସ୍ତବରେ ଘନ ଘନ ପ୍ରମାଣିତ ହେଉଛି । ତେଣୁ ଜାତୀୟ ମୁକ୍ତି ଗଣତାନ୍ତ୍ରିକ ଆନ୍ଦୋଳନକୁ ସଂପୂର୍ଣ୍ଣ କରିବାର ଦାୟିତ୍ୱ ସର୍ବହରା ଶ୍ରେଣୀ (ଶ୍ରମିକ ଶ୍ରେଣୀ) ଉପରେ ଏବଂ ଏହାର ଅଗ୍ରୁଆ ବାହିନୀ କମ୍ୟୁନିଷ୍ଟ ପାର୍ଟି ଉପରେ ।

ଏବେ ଭାରତରେ କମ୍ୟୁନିଷ୍ଟ ପାର୍ଟି ବହୁଧା ବିଭକ୍ତ । ଏବଂ ଏମାନଙ୍କର ରାଜନୀତି ଓ ନୀତି ଭିନ୍ନ ଭିନ୍ନ । CPI, CPI (M)ର ନେତୃତ୍ୱ ଯେହେତୁ ସୋଭିଏତ-ସାମ୍ରାଜ୍ୟବାଦର ଅନୁଧାବକ ତେଣୁ ସେମାନେ ସାମ୍ରାଜ୍ୟବାଦ ବିରୋଧୀ ଜାତୀୟ ମୁକ୍ତି ଆନ୍ଦୋଳନର ନେତୃତ୍ୱ ନେବାତ ଦୂରର କଥା ବରଂ ସେମାନେ ସାମ୍ରାଜ୍ୟବାଦର ଦଲାଲ ସଙ୍ଗ ଭାରତୀୟ ଶାସକ ଶ୍ରେଣୀ ସହିତ ହାତ ମିଳାଇ ମିଳିତ ଭାବେ ଏହି ଆନ୍ଦୋଳନକୁ ଧୂଳିସାତ କରିବା ପାଇଁ ଶତ ଚେଷ୍ଟା କରିବେ ।

ଅନ୍ୟାନ୍ୟ ବାମପନ୍ଥୀ ଦଳ ଯେଉଁମାନେ କି ଭାରତକୁ ସ୍ୱାଧୀନ ବୋଲି ଘୋଷଣା କରୁଛନ୍ତି ଏବଂ ଭାରତକୁ ବହୁ ଜାତୀୟ ରାଜ୍ୟର ସମଷ୍ଟି ନ କହି ଭାରତ ଏକ ଜାତି ବୋଲି ସର୍ବଭାରତୀୟ ଶାସକ ଶ୍ରେଣୀ ସହିତ ଏକମତ ହେଉଛନ୍ତି, ସେମାନଙ୍କ ବିଶ୍ଳେଷଣରେ ଭାରତରେ ସାମ୍ରାଜ୍ୟବାଦ-ବିରୋଧୀ ଜାତୀୟ ମୁକ୍ତି ଆନ୍ଦୋଳନର ପ୍ରଶ୍ନ ଉଠୁନାହିଁ । ତେଣୁ ସେମାନଙ୍କର ଏଥିରେ ନେତୃତ୍ୱ ନେବାର ପ୍ରଶ୍ନ ଉଠୁନାହିଁ । ବରଂ ସେମାନେ ପ୍ରତ୍ୟକ୍ଷରେ କିମ୍ବା ପରୋକ୍ଷରେ ଏହି ଜାତୀୟ-ମୁକ୍ତି ଆନ୍ଦୋଳନକୁ ବିଚ୍ଛିନ୍ନତାବାଦୀ ଆନ୍ଦୋଳନ ବୋଲି ଆଖ୍ୟାଦେବେ ଓ ବିରୋଧ କରିବେ ।

ବହୁଧା ବିଭକ୍ତ ନକ୍ସାଲ ପନ୍ଥୀ ରାଜନୈତିକ ସଂଗଠନ ମାନଙ୍କ ମଧ୍ୟରୁ ଅନେକ ଏବଂ କେତେକ କମ୍ୟୁନିଷ୍ଟ-ବିପ୍ଳବୀ ସଂଗଠନ ସେମାନଙ୍କର ସାମନ୍ତବାଦ-ପ୍ରଧାନ ଶର୍ତ୍ତ ଭିତ୍ତିକ ରାଜନୀତିକୁ ନ ଛାଡ଼ିଲା ପର୍ଯ୍ୟନ୍ତ ଏହି ସାମ୍ରାଜ୍ୟବାଦ-ବିରୋଧୀ-ଜାତୀୟ ମୁକ୍ତି ଆନ୍ଦୋଳନରେ ସମର୍ଥନ କରି ପାରିବେ ନାହିଁ କିମ୍ବା କୌଣସି କାରଣରୁ ସମର୍ଥକ ହେଲେ ମଧ୍ୟ ଏହାର ନେତୃତ୍ୱ ନେଇ ପାରିବେ ନାହିଁ ।

ତେଣୁ, ଉପରୋକ୍ତ ସମସ୍ତ କମ୍ୟୁନିଷ୍ଟ ପାର୍ଟି ଜାଣିତରେ ହେଉ ବା ଅଜାଣତରେ ହେଉ ଭାରତରେ ତଥା ଓଡ଼ିଶାରେ ସାମ୍ରାଜ୍ୟବାଦର ଶୋଷଣକୁ ଦୃଢ଼ୀଭୂତ କରିବେ ବା ପ୍ରଶ୍ରୟ ଦେବେ ।

ବର୍ତ୍ତମାନ ଦୁଇଟି କମ୍ୟୁନିଷ୍ଟ ସଂଗଠନ CRC, CPI(M-L) ଏବଂ R.C.P.I. ସେମାନଙ୍କର ସମସ୍ତ ରାଜନୈତିକ ଦୁର୍ବଳତା ସତ୍ତ୍ୱେ ଭାରତ ବର୍ଷର ରାଜନୀତିକୁ ଅନେକାଂଶରେ ଠିକ୍ ଭାବେ ବିଶ୍ଳେଷଣ କରି ପାରିଛନ୍ତି । ଯାହା ଫଳରେ କି ପ୍ରତ୍ୟେକ

ଜାତିର ଅର୍ଥନୈତିକ, ରାଜନୈତିକ ତଥା ସାଂସ୍କୃତିକ ବିକାଶ ପଥରେ ସର୍ବଭାରତୀୟ ଶାସକ ଶ୍ରେଣୀ ପ୍ରତିବନ୍ଧକ ହୋଇ ରହିଅଛି ଏବଂ ତେଣୁ ଭାରତର ପ୍ରତ୍ୟେକ ଜାତି ସାମ୍ରାଜ୍ୟବାଦ ଶୋଷଣରୁ ମୁକ୍ତି ପାଇବାକୁ ହେଲେ ସେମାନଙ୍କର ସାମ୍ରାଜ୍ୟବାଦ-ବିରୋଧୀ ଜାତୀୟ ମୁକ୍ତି ଆନ୍ଦୋଳନ ତରଫରେ ପ୍ରଥମେ ସର୍ବଭାରତୀୟ ଶାସନରୁ ବିଚ୍ଛିନ୍ନ ହେବା ଉଚିତ ବୋଲି ଏ ଦୁଇଟି କମ୍ୟୁନିଷ୍ଟ ସଂଗଠନ ମନେ କରନ୍ତି ।

ଏ ଦୁଇଟି କମ୍ୟୁନିଷ୍ଟ ସଂଗଠନ ଯେତେ କ୍ଷୁଦ୍ର ହେଲେ ବି ସେମାନଙ୍କର ସାମ୍ରାଜ୍ୟବାଦ-ବିରୋଧୀ-ଜାତୀୟ ମୁକ୍ତି ଆନ୍ଦୋଳନର ବିକାଶ ସମଗ୍ର ଭାରତର ବିଭିନ୍ନ ଜାତିର ତଥା ଓଡ଼ିଶାର ସର୍ବହରା ଶ୍ରେଣୀ ଓ ମେହନତି ଜନଗଣଙ୍କୁ ସାମ୍ରାଜ୍ୟବାଦ ଶୋଷଣରୁ ମୁକ୍ତ କରିବା ପାଇଁ ନେତୃତ୍ୱ ଦେବ ।

ଓଡ଼ିଶାରେ ଏହି ସାମ୍ରାଜ୍ୟବାଦ-ବିରୋଧୀ-ଜାତୀୟ ମୁକ୍ତି ଆନ୍ଦୋଳନକୁ ସଂପୂର୍ଣ୍ଣ କରିବା ସକାଶେ ଓଡ଼ିଶାର ସର୍ବହରା ଶ୍ରେଣୀ ଓ ମେହନତି ଜନଗଣଙ୍କୁ ନେତୃତ୍ୱ ଦେବା ପାଇଁ ଏକ ସଠିକ୍ କମ୍ୟୁନିଷ୍ଟ ପାର୍ଟିର ଗଠନ ଆବଶ୍ୟକ ପଡ଼ୁଛି । ବର୍ତ୍ତମାନର କ୍ଷେପଣାସ୍ତ୍ର ଘାଟୀ ବିରୋଧୀ ଆନ୍ଦୋଳନ ହିଁ ଏହି ସଠିକ୍ କମ୍ୟୁନିଷ୍ଟ ପାର୍ଟିର ଭିତ୍ତିକୁ ହିଁ ସୃଷ୍ଟି କରିବ ଯେ କି ନିକଟ ଭବିଷ୍ୟତରେ ଓଡ଼ିଶାର ସାମ୍ରାଜ୍ୟବାଦ-ବିରୋଧୀ-ଜାତୀୟ ମୁକ୍ତି ଆନ୍ଦୋଳନର ନେତୃତ୍ୱ ନେବ ।

ଏହି ସାମ୍ରାଜ୍ୟବାଦ-ବିରୋଧୀ-ଜାତୀୟ ମୁକ୍ତି ଆନ୍ଦୋଳନକୁ ଯଦି ଏକ ସଠିକ୍ କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱ ନ ଦିଏ, ତେବେ ଫଳ ଓଲଟା ହେବ । ଏ ସଂପର୍କରେ ପରବର୍ତ୍ତୀ ପୃଷ୍ଠାରେ ଆଲୋଚିତ ହୋଇଛି ।

## ସାମ୍ରାଜ୍ୟବାଦ-ବିରୋଧୀ-ଜାତୀୟ ମୁକ୍ତି ଆନ୍ଦୋଳନ କ'ଣ ବିଚ୍ଛିନ୍ନତାବାଦୀ ?

ସାମ୍ରାଜ୍ୟବାଦର ଦଲାଲ ସର୍ବଭାରତୀୟ ଶାସକ ଶ୍ରେଣୀ ତଥା ଏହାର ଶାସକ ଓ ବିରୋଧୀ ଦଳ ଏବଂ ଏପରିକି CPI, CPI (M)ର ନେତୃତ୍ୱ ଏହି ସାମ୍ରାଜ୍ୟବାଦ-ବିରୋଧୀ-ଜାତୀୟ ମୁକ୍ତି ଆନ୍ଦୋଳନକୁ ଜନଗଣଙ୍କ ଆଗରେ ବିଚ୍ଛିନ୍ନତାବାଦୀ ଆନ୍ଦୋଳନ ବୋଲି ଡିଂଡିମ ପିଟି ପାରନ୍ତି । ତେଣୁ ଜନଗଣ ଏହି ଅପ ପ୍ରଚାରରେ ବଶବର୍ତ୍ତୀ ହେବା ସ୍ୱାଭାବିକ । ଭବିଷ୍ୟତରେ ଓଡ଼ିଶାର ସାମ୍ରାଜ୍ୟବାଦ-ବିରୋଧୀ ଜାତୀୟ ମୁକ୍ତି ଆନ୍ଦୋଳନ ମଧ୍ୟ ବିଚ୍ଛିନ୍ନତାବାଦୀ ବୋଲି ଭାରତୀୟ ଜନଗଣଙ୍କ ଦ୍ୱାରା ଘୃଣିତ ହେବାର ବହୁ ସମ୍ଭାବନା ଅଛି । ଏପରିକି ଓଡ଼ିଶାର ବହୁ ଜନଗଣ ଏଥିପାଇଁ ନାସିକା କୁଂଚନ କରିବା ଅସ୍ୱାଭାବିକ ନୁହେଁ । ଜନଗଣ ଏ ସମସ୍ତ ଭୁଲ ବୁଝିବାର କାରଣ ହେଉଛି ସେମାନଙ୍କର ରାଜନୈତିକ ଅସଚେତନତା ।

ବାସ୍ତବରେ କୌଣସି ସାମ୍ରାଜ୍ୟବାଦ-ବିରୋଧୀ-ଜାତୀୟ ମୁକ୍ତି ଆନ୍ଦୋଳନ ବିଚ୍ଛିନ୍ନତାବାଦୀ ନୁହେଁ । ବିଶ୍ୱ ପୁଞ୍ଜିବାଦ ଯେତେବେଳେ ସାମ୍ରାଜ୍ୟବାଦ ସ୍ତରରେ ଅଛି, ସେତେବେଳେ ସବଳ ଜାତିର ଦୁର୍ବଳ ଜାତି ଉପରେ ଜାତୀୟ ନିପୀଡ଼ନ ହେବାକୁ ବାଧ୍ୟ । ତେଣୁ ଦୁର୍ବଳ ଜାତି ସବଳ ଜାତିର ଶୋଷଣରୁ ମୁକ୍ତ ହେବା ପାଇଁ ଜାତୀୟ ମୁକ୍ତି ଆନ୍ଦୋଳନ ଗଢ଼ି ତୋଳିବାକୁ ବାଧ୍ୟ ହେବ । ଜାତି ଓ ଜାତି ମଧ୍ୟରେ ସନ୍ଦେହ, ଅବିଶ୍ୱାସ ଓ ଘୃଣା ରହିବାକୁ ବାଧ୍ୟ ହେବ । ଏ ସମସ୍ତର କାରଣ ହେଉଛି ବିଶ୍ୱ ପୁଞ୍ଜିବାଦର ଶୋଷଣ । ଏହି ପୁଞ୍ଜିବାଦ ଶୋଷଣରେ ଭିତ୍ତି ଥିବା ପର୍ଯ୍ୟନ୍ତ ଜାତି ଓ ଜାତି ଭାଗ ଭାଗ ହୋଇ ରହିବାକୁ ବାଧ୍ୟ ହେବ । ଏଠାରେ ଜାତି ଓ ଜାତି ମଧ୍ୟରେ ସଂଘର୍ଷ ବା ଶୋଷକ ଜାତି ଓ ଶୋଷିତ ଜାତି ମଧ୍ୟରେ ସଂଘର୍ଷର ଅର୍ଥ ହେଉଛି ସବଳ ଜାତିର ଦୁର୍ବଳ ଜାତି ଉପରେ ଜାତୀୟ ନିପୀଡ଼ନକୁ ଅକ୍ଷୁଣ୍ଣ ରଖିବା ଏବଂ ଏହାକୁ ପ୍ରବୃତ୍ତ କରିବା । ଅର୍ଥାତ୍ ଏଭଳି ଶୋଷଣ-ଭିତ୍ତିକ ଜାତୀୟ ସଂଘର୍ଷ ଚଳ-ଉନ ପାଇଁ ଜାତି ଓ ଜାତି ମଧ୍ୟରେ ବିଭାଜନକୁ କାଗଜ, କଲମରେ କିମ୍ବା ଭୌଗଳିକ ସୀମା ଅନୁସାରେ ନ କରିଲେ ମଧ୍ୟ ବାସ୍ତବରେ ଜନଙ୍କ ହୃଦୟ ମଧ୍ୟରେ ଧରି ରଖିବ ।

ଏହି ଜାତି ଓ ଜାତି ମଧ୍ୟରେ କିପରି ଜାତୀୟ ନିପୀଡ଼ନ ଦୂର ହେବ ଏବଂ ପରସ୍ପର ମଧ୍ୟରେ ସନ୍ଦେହ ଓ ଅବିଶ୍ୱାସ ଦୂର ହେବ ସେଥିପାଇଁ ମାର୍କ୍ସବାଦୀ-ଲେନିନ୍‌ବାଦୀ ମାନେ ପ୍ରାୟ ମାର୍କ୍ସଙ୍କ ସମୟରୁ ଏପର୍ଯ୍ୟନ୍ତ ଏକ ନୀତିଗତ ସିଦ୍ଧାନ୍ତ ମାନି ଆସିଛନ୍ତି । ସେ ସିଦ୍ଧାନ୍ତ ହେଲା : ପ୍ରତ୍ୟେକ ଜାତିର ଆତ୍ମ ନିୟନ୍ତ୍ରଣ ଅଧିକାର ଅଛି ( Right of Nations for Self-Determination ) । ସେହି ଆତ୍ମ ନିୟନ୍ତ୍ରଣ ଅଧିକାରର ଅର୍ଥ ହେଲା ଏକ ଜାତି ନିଜକୁ ସ୍ୱାଧୀନ ଭାବେ ଗଢ଼ିବା ପାଇଁ ସ୍ୱତନ୍ତ୍ର ଭାବେ ଅଲଗା ହୋଇ ରହିବାର ଅଧିକାର ( Right to Seccede ) । ଏହାକୁ ଯେଉଁ ମାର୍କ୍ସବାଦୀ-ଲେନିନ୍‌ବାଦୀ ଅସ୍ୱୀକାର କରିବେ ସେ ବୁର୍ଜୁଆ-ଜାତୀୟ ଔଦ୍ଧତ୍ୟବାଦ ( Bourgeois National-Chauvinism ) ର ଶିକାର ବୋଲି ଧରିବାକୁ ହେବ ।

ସମାଜ ସାମ୍ରାଜ୍ୟବାଦ ଓ ପୁଞ୍ଜିବାଦ ଅବସ୍ଥାରେ ଥିଲା ପର୍ଯ୍ୟନ୍ତ ପ୍ରଥମେ ପ୍ରତ୍ୟେକ ଜାତୀୟ ରାଜ୍ୟ ସ୍ୱାଧୀନ ଭାବେ ଗଢ଼ି ଉଠିବା ଐତିହାସିକ ଭାବେ ଏକ ବୈପ୍ଳବିକ ଅନିବାର୍ଯ୍ୟ ପର୍ଯ୍ୟାୟ । ଏହି ପର୍ଯ୍ୟାୟରେ ସାମ୍ରାଜ୍ୟବାଦୀ ଶୋଷଣ ଲୋପ ପାଇବା ସଙ୍ଗେସଙ୍ଗେ ଜାତି ଓ ଜାତି ମଧ୍ୟରେ ଶୋଷଣ ଲୋପପାଏ । ଏହି ଅବସ୍ଥାରେ ଗୋଟିଏ ସ୍ୱାଧୀନ ଜାତୀୟ ରାଜ୍ୟରେ ତା'ର ଭାଷା, ଅର୍ଥନୀତି ରାଜନୀତି ଓ ସଂସ୍କୃତିର ଏକ

ମୁକ୍ତ ଏବଂ ପୂର୍ଣ୍ଣ ବିକାଶ ଘଟେ । କିନ୍ତୁ ପ୍ରତ୍ୟେକ ସ୍ୱାଧୀନ ଜାତୀୟ ରାଜ୍ୟରେ ପୁଞ୍ଜିବାଦର ଶୋଷଣ ଲୋପ ନପାଇବା ପର୍ଯ୍ୟନ୍ତ ଗୋଟିଏ ଜାତି ଅନ୍ୟ ଜାତିକୁ ଶୋଷଣ କରିବାର ସମ୍ଭାବନା ରହିଛି । ତେଣୁ ସମାଜର ପରବର୍ତ୍ତୀ ବୈପ୍ଳବିକ ପର୍ଯ୍ୟାୟ ହେଉଛି ପ୍ରତ୍ୟେକ ସ୍ୱାଧୀନ ଜାତୀୟ ରାଜ୍ୟରୁ ପୁଞ୍ଜିବାଦକୁ ଲୋପ କରିବା । ଯେତେବେଳେ ସମସ୍ତ ସ୍ୱାଧୀନ ଜାତୀୟ ରାଜ୍ୟମାନଙ୍କରେ ପୁଞ୍ଜିବାଦ ଲୋପ୍ ପାଇ ସମାଜବାଦ ଦେଖାଦେବ, ସେତେବେଳେ ଜାତି ଓ ଜାତି ମଧ୍ୟରେ ଶୋଷଣର ସମସ୍ତ ସମ୍ଭାବନା ଲୋପ ପାଇଯିବ । ତେଣୁ ଜାତି ଓ ଜାତି ମଧ୍ୟରେ ସନ୍ଦେହ, ଅବିଶ୍ୱାସ ଦୂର ହେବ । କୌଣସି ଜାତିର ଲକ୍ଷ ରହିବ ନାହିଁ ଅନ୍ୟ ଏକ ଜାତିକୁ ଶୋଷଣ କରିବା ପାଇଁ । ବରଂ ଗୋଟିଏ ଜାତି ଅନ୍ୟ ଜାତିକୁ ସାହାଯ୍ୟ କରିବା ପାଇଁ ଆଗଭର ହେବ ।

ଏହି ଅବସ୍ଥାରେ ଜାତି ଓ ଜାତି ମଧ୍ୟରେ ମୈତ୍ରୀର ଭାବ ଗଢ଼ି ଉଠିବ । ପ୍ରତ୍ୟେକ ଜାତି ଅନ୍ୟ ଜାତିକୁ ପ୍ରଗତି ପଥରେ ସାହାଯ୍ୟ କରିବ । ସେତେବେଳେ ଜାତି ଓ ଜାତି ମଧ୍ୟରେ ମୁକ୍ତ ମିଳା ମିଶା ଆରମ୍ଭ ହେବ । ସେମାନଙ୍କ ମଧ୍ୟରେ ବିଭିନ୍ନ ଭାଷା ଓ ସଂସ୍କୃତିର ମୁକ୍ତ ବିନିମୟ ହେବ । ଏହି ମୁକ୍ତ ମିଳା ମିଶା ଓ ପରସ୍ପରକୁ ସାହାଯ୍ୟ ଯୋଗୁ ଦୃଢ଼ୟୁ କ୍ରମେ ଭାବର ଆଦାନ ପ୍ରଦାନ ପାଇଁ ଏକ ସାଧାରଣ ଭାଷା (Common Language) ର ବିବର୍ତ୍ତନ ହେବ ଏବଂ ଏକ ସାଧାରଣ ସଂସ୍କୃତିର ମଧ୍ୟ ବିବର୍ତ୍ତନ ହେବ । କ୍ରମଶଃ ବିଶ୍ୱଜନଗଣ ଉପଲବ୍ଧି କରିବେ ଯେ ଏକ ସାଧାରଣ ଭାଷା ଓ ସାଧାରଣ ସଂସ୍କୃତି ଆଗରେ ପ୍ରତ୍ୟେକ ଜାତିର ଭାଷା ଓ ସଂସ୍କୃତି ବେକାର ତଥା ଅନାବଶ୍ୟକ ହୋଇପଡ଼ୁଛି । ତେଣୁ ଜାତୀୟ ବିଶେଷତ୍ୱ (Specificity) ଲୋପ ପାଇବା ସଙ୍ଗେ ସଙ୍ଗେ ଆଞ୍ଚଳିକ ସୀମା ବେକାର ହୋଇ ପଡ଼ିବ । ପରିଶେଷରେ ବିଶ୍ୱ ଏକ ଅଭିନ୍ନ ସମାଜରେ ପରିଣତ ହେବ ।

## ଏକ ବିଶ୍ୱ :

ଆମ୍ଭେ କମ୍ୟୁନିଷ୍ଟ ବିପ୍ଳବୀମାନେ ଏକ-ବିଶ୍ୱ ମାନବ ସମାଜ ଗଢ଼ିବାରେ ଅଂଗୀକାର ବଦ୍ଧ । କିନ୍ତୁ ଏହି ବିଶ୍ୱ ମାନବ ସମାଜ ଗଢ଼ିବାକୁ ଯାଇ ତା'ର ଏକ ଅନିର୍ବାର୍ଯ୍ୟ ବୈପ୍ଳବିକ ପର୍ଯ୍ୟାୟକୁ ଏଡ଼େଇ ଦେଇ ହେବ ନାହିଁ । ତା'ର ମଧ୍ୟବର୍ତ୍ତୀ କାଳୀନ ପର୍ଯ୍ୟାୟକୁ ଏଡ଼େଇ ଦେଇ ହେବ ନାହିଁ । ତେଣୁ ଲେନିନ୍ କହିଛନ୍ତି : ଯେପରି ଏକ ଶ୍ରେଣୀ ହୀନ ସମାଜ ଗଠନ କରିବା ପାଇଁ ସର୍ବହରା ଶ୍ରେଣୀର ଅଧିନାୟକତ୍ୱ ଭଳି ଏକ ମଧ୍ୟବର୍ତ୍ତୀକାଳୀନ ପର୍ଯ୍ୟାୟ ( Transitional state ) ଅନିବାର୍ଯ୍ୟ ଠିକ୍ ସେହିପରି ମାନବ ସମାଜକୁ ଏକ ଅଭିନ୍ନ ବିଶ୍ୱସମାଜ ଗଢ଼ିବା

ପାଇଁ ପ୍ରତ୍ୟେକ ଜାତିର ସ୍ୱାଧୀନ ଏବଂ ପୂର୍ଣ୍ଣ ବିକାଶ ଭଳି ମଧ୍ୟବର୍ତ୍ତୀ କାଳୀନ ପର୍ଯ୍ୟାୟ ଅନିବାର୍ଯ୍ୟ ।

ତେଣୁ ଏକ ସଠିକ୍ କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ ଓଡ଼ିଶାର ସାମ୍ରାଜ୍ୟବାଦ-ବିରୋଧୀ-ଜାତୀୟ ମୁକ୍ତି ଆନ୍ଦୋଳନ କିମ୍ବା ଭାରତରେ ଅନ୍ୟାନ୍ୟ ଜାତିର ଜାତୀୟ ମୁକ୍ତି ଆନ୍ଦୋଳନ କେବେ ବିଚ୍ଛିନ୍ନତାବାଦୀ (Seccesionist) ନୁହେଁ । ବରଂ ଏହି ପଦକ୍ଷେପ ଏକ ଅନିବାର୍ଯ୍ୟ ମଧ୍ୟବର୍ତ୍ତୀକାଳୀନ ପର୍ଯ୍ୟାୟ ଭାବେ ବିଶ୍ୱକୁ ଅଭିନ୍ନ ମାନବ ସମାଜ ଭାବେ ଗଢିବା-ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବ ।

ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ ଭାରତରେ ବିଭିନ୍ନ ସାମ୍ରାଜ୍ୟବାଦୀ ଶକ୍ତିମାନେ ସାଲିସ୍ ଦ୍ୱାରା ସହାବସ୍ଥାନ କରୁଛନ୍ତି । ଏବଂ ସାମୂହିକ ଭାବେ ଭାରତର ବଜାରକୁ ଲୁଣ୍ଠନ କରୁଛନ୍ତି । କିନ୍ତୁ ଏମାନଙ୍କର ସାଲିସ୍-ଜନକ ସଂଗ୍ରାମ ବେସାଲିସ୍-ସଂଗ୍ରାମର ଅନ୍ୟ ପାଖ । ତେଣୁ ଏହି ସାଲିସ୍ କ୍ଷଣସ୍ଥାୟୀ, ଅବସ୍ଥା ଜନିତ ଏବଂ ଆପେକ୍ଷିକ ଅଟେ । କୌଣସି ମୁହୂର୍ତ୍ତରେ ଏ ସାଲିସ୍ ଭାଂଗି ଯାଇ ପାରେ । ଏବଂ ଭାରତ ଭୂଖଣ୍ଡରେ ସେମାନଙ୍କର ହିଂସାତ୍ମକ ସଂଗ୍ରାମ ଆରମ୍ଭ ହୋଇ ପାରେ । ତେଣୁ ଏହି ସାମ୍ରାଜ୍ୟବାଦୀ ଶକ୍ତି ମାନେ ଯୁଦ୍ଧ କରିଆରେ ଭାରତକୁ ଖଣ୍ଡ ବିଖଣ୍ଡ କରିବେ । ତେଣୁ ପ୍ରତ୍ୟେକ ସାମ୍ରାଜ୍ୟବାଦୀ ଶକ୍ତି କିମ୍ବା ଗୋଷ୍ଠୀ ଭାରତର ପ୍ରତ୍ୟେକ ଜାତୀୟ ରାଜ୍ୟରେ ଛଳନାତ୍ମକ-ଜାତୀୟ ମୁକ୍ତି ଆନ୍ଦୋଳନ ଚଳାଇ ନିଜ ନିଜ ଅଧୀନକୁ ଖଣ୍ଡିଏ ଖଣ୍ଡିଏ ଜାତୀୟ ରାଜ୍ୟ ନେଇଯିବେ । ଠିକ୍ ଯେପରି ପାକିସ୍ଥାନ ଶାସନରୁ ବଙ୍ଗଳା ଦେଶକୁ ଅଲଗା କରି ନେଇ ଯାଇଥିଲେ । ତେଣୁ, ଯଦି ପ୍ରତ୍ୟେକ ଜାତୀୟ ରାଜ୍ୟରେ ସଚ୍ଚା କମ୍ୟୁନିଷ୍ଟ ସଂଗଠନ ଏହି ଜାତୀୟ ମୁକ୍ତି ଆନ୍ଦୋଳନରେ ନେତୃତ୍ୱ ନ ନିଅନ୍ତି ଏବଂ ଏହି ଜାତୀୟ ମୁକ୍ତି ଆନ୍ଦୋଳନକୁ ସାମ୍ରାଜ୍ୟବାଦ ବିରୋଧୀ ନ କରନ୍ତି ତେବେ ସେହି ଜାତୀୟ ରାଜ୍ୟମାନଙ୍କରେ ସାମ୍ରାଜ୍ୟବାଦ ଶକ୍ତିର ଦଲାଲ-ରାଜନୈତିକ ପାର୍ଟିମାନେ ଛଳନାତ୍ମକ-ଜାତୀୟ ମୁକ୍ତି ଆନ୍ଦୋଳନର ନେତୃତ୍ୱ ନେବେ ଏବଂ ସେହି ଜାତୀୟ ରାଜ୍ୟକୁ ସାମ୍ରାଜ୍ୟବାଦ-ବିରୋଧୀ ନ କରି ଏକ ନିର୍ଦ୍ଦିଷ୍ଟ ସାମ୍ରାଜ୍ୟବାଦୀ ଶକ୍ତିର ଏକ ନବ-ଉପନିବେଶ ବନାଇବେ । ବିଶ୍ୱକୁ ଏକ ଅଭିନ୍ନ ମାନବ ସମାଜର ଗଠନ କରିବାର ପ୍ରକ୍ରିୟା ବିଲମ୍ବିତ କରିବେ ।

ଭାରତର ପ୍ରତ୍ୟେକ ଜାତୀୟ ରାଜ୍ୟରେ ସଚ୍ଚା କମ୍ୟୁନିଷ୍ଟ ସଂଗଠନ ସାମ୍ରାଜ୍ୟବାଦ-ବିରୋଧୀ-ଜାତୀୟ ମୁକ୍ତି ଆନ୍ଦୋଳନ କରିଆରେ ସାମ୍ରାଜ୍ୟବାଦର ଦଲାଲ

ସର୍ବଭାରତୀୟ ଶାସକ ଶ୍ରେଣୀର ଶାସନରୁ ପ୍ରଥମେ ପ୍ରତ୍ୟେକ ଜାତିକୁ ମୁକ୍ତ କରିବେ । ଅର୍ଥାତ୍ ଭାରତର ବିଭିନ୍ନ ଜାତିର ଜନଗଣ ଉପରେ ସାମ୍ରାଜ୍ୟବାଦ ଦ୍ୱାରା ଲଦା ଯାଇ ଥିବା ପ୍ରତିକ୍ରିୟାଶୀଳ ଐକ୍ୟକୁ ପ୍ରଥମେ ଜାତୀୟ ମୁକ୍ତି ଆନ୍ଦୋଳନ ଜରିଆରେ ଭାଙ୍ଗିବେ । ପୁନଶ୍ଚ, ମଛା-କମ୍ୟୁନିଷ୍ଟ ବିପ୍ଳବୀ ସଂଗଠନର ନେତୃତ୍ୱରେ ଥିବା ଭାରତର ବିଭିନ୍ନ ଜାତୀୟ ରାଜ୍ୟମାନଙ୍କ ମଧ୍ୟରେ ଏକ ବୈପ୍ଳବିକ ସ୍ୱେଚ୍ଛାପୂର୍ବକ ଐକ୍ୟ (Voluntary Unity ) ଗଠନ କରିବେ । ସ୍ୱେଚ୍ଛାପୂର୍ବକ ଐକ୍ୟର ଅର୍ଥ ହେଉଛି ଯେ ପ୍ରତ୍ୟେକ ଜାତୀୟ ରାଜ୍ୟ ଯଦି ଉଚିତ୍ ମନେକରେ ତେବେ ସେ ସ୍ୱଇଚ୍ଛାରେ ଏହି ଐକ୍ୟ ମଧ୍ୟରେ ଆବଦ୍ଧ ରହିବ । ତେଣୁ ସାମ୍ରାଜ୍ୟବାଦ ବିରୋଧୀ ଜାତୀୟ ମୁକ୍ତି ଆନ୍ଦୋଳନରେ ବିଶ୍ୱାସ କରୁଥିବା କମ୍ୟୁନିଷ୍ଟ ବିପ୍ଳବୀମାନେ ଚାହାନ୍ତି ଯେ ବିଭିନ୍ନ ଜାତିର ଜନଗଣ ବର୍ତ୍ତମାନର ପ୍ରତିକ୍ରିୟାଶୀଳ ଐକ୍ୟକୁ ଭାଙ୍ଗି ପୁନଶ୍ଚ ବିଭିନ୍ନ ଜାତିର ଜନଗଣଙ୍କ ଇଚ୍ଛା ଅନୁସାରେ ଏକ ନୂତନ ବୈପ୍ଳବିକ ଐକ୍ୟକୁ ଗଢ଼ି ତୋଳିବା । ଏହି ବୈପ୍ଳବିକ ଐକ୍ୟ ହିଁ ଏକ ବିଶ୍ୱ ଗଢ଼ିବା ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବ ।

— X —

# ସଂଶୋଧନ ପତ୍ର

| ପୃଷ୍ଠା | ଧାଡ଼ି | ଭୁଲ୍ | ଠିକ୍ |
|---|---|---|---|
| ଘ | ୧୩ | ଢାଲନ୍ | ଚାଳନ୍ |
| ଘ | ୨୭ | factical | tactical |
| ଚ | ୧୭(ପ୍ରଥମ) | it | if |
| ଝ | ୨୫ | ଶାସନକୁ-ନବଉପନିବେଶ | ଶାସନକୁ ଅର୍ପଣ କରି ଭାରତକୁ ନବ-ଉପନିବେଶ |
| ୧ | ୪ | ବାସଚ୍ୟତ | ବାସଚ୍ୟଢ |
| ୭ | ୮ | ଯୁଦ୍ଧରେ | ଯୁଦ୍ଧର |
| ୭ | ୨୯ | ଧରିରଖିବା ଏହି | ଧରିରଖିବା । ଏହି |
| ୮ | ୧୩ | ପ୍ରସ୍ତୁତ | ପ୍ରସ୍ତୁଢ |
| ୯ | ୧ | ପରିସ୍ଥିତି | ପରିସ୍ଥିଢି |
| ୧୦ | ୧୮ | ମୁଖ-ବସ୍ତୁରକମାନେ | ମୁଖ୍ୟ-ବସ୍ତୁରକ ମାନେ |
| ୧୦ | ୨୮ | ପରଦ | ପରଦା |
| ୧୧ | ୧୦ | ସେମାନଙ୍କ | ସେମାନଙ୍କୁ |
| ୧୨ | ୧୨ | ବଭକ୍ତ କରଣ | ବିଭକ୍ତ କରଣର |
| ୧୩ | ୧୨ | ସାମାଜ୍ୟବାଦୀ | ସାମ୍ରାଜ୍ୟବାଦୀ |
| ୧୩ | ୧୯ | ଯାଇଥିବା | ଯାଉଥିବା |
| ୧୩ | ଶେଷ ଧାଡ଼ି | ସାମ୍ରାଜ୍ୟବାଦ | ସାମ୍ରାଜ୍ୟବାଦୀ |
| ୧୬ | ୮ | Bourgeoisve | Bourgeoisie |
| ୧୬ | ୧୫ | ସାମ୍ରାଜ୍ୟବାଦ | ସାମ୍ରାଜ୍ୟବାଦୀ |
| ୧୮ | ୩ | ଷ୍ଟାଲିନ୍ଙ୍କୁ | ଷ୍ଟାଲିନ୍ଙ୍କ |

| ପୃଷ୍ଠା | ଧାଡ଼ି | ଭୁଲ୍ | ଠିକ୍ |
|---|---|---|---|
| ୧୮ | ୨୧ | ପାଠକୁ | ପାଠ କୁ |
| ୧୮ | ୨୯ | ପ୍ରତିସ୍ଥ | ପ୍ରତିଷ୍ଠା |
| ୧୮ | ୨୯ | ଶତ୍ରୁ ଯାହାକୁ | ଶତ୍ରୁ [ ଯାହାକୁ |
| ୧୯ | ୧୧ | ପାଠ | ପାଠ |
| ୨୦ | ୨୭ | ଅଥବା, ଶୋଭ ଏକ | ଅଥବା, ଯଦ ଶୋଭ ଏକ |
| ୨୧ | ୨୧ | ଯାଆନ୍ତୁ । ତେବେ | ଯାଆନ୍ତୁ ତେବେ |
| ୨୩ | ୧୦ | (M-L) RCPI | (M-L) ଓ RCPI |
| ୨୪ | ୨୮ | କାଗଜର ମୁକ୍ତ | କାଗଜର କାଗଜସ୍ତ ମୁକ୍ତ |
| ୨୭ | ୧୮ | ଶିଲ୍ପ କରଣ | ଶିଳ୍ପୀ କରଣ |
| ୨୭ | ୨୪ | ଶିଲ୍ପ କରଣ | ଶଲ୍ପୀ କରଣ |
| ୨୮ | ୨ | ବଢ଼ିଲେ ଏମାନେ ବ | ବଢ଼ିଲେ ମଧ୍ୟ ଏମାନେ |
| ୨୮ | ୧୦ | ସାମ୍ରାଜ୍ୟବାଦ | ସାମ୍ରାଜ୍ୟବାଦୀ |
| ୨୮ | ୧୪ | ବ୍ୟବହାର | ବ୍ୟବହୃତ |
| ୨୯ | ୧ | ସାମ୍ରାଜ୍ୟବାଦ | ସାମ୍ରାଜ୍ୟବାଦୀ |
| ୨୯ | ୪ | ଏହକୁ | ଏହାକୁ |
| ୨୯ | ୧୫ | କାରଣର | କାରଣରୁ |
| ୩୦ | ୧୭ | ରାଜ୍ୟରେ | ଯେଉଁ ରାଜ୍ୟରେ |
| ୩୧ | ୫ | ସରକାରଙ୍କ | ସରକାରଙ୍କର |
| ୩୨ | ୫ | ପରାଧୀନ | ପରାଧୀନ । |
| ୩୩ | ୭ | ସାମ୍ରାଜବାଦୀ | ସମାଜବାଦୀ |
| ୩୪ | ୨୦ | Controvertion | Contradiction |
| ୩୬ | ୭ | ଖାଲସା | ଖାଲସ୍ |
| ୩୭ | ୨୪ | ଥିଲେ "୧୯୭୧... | ଥିଲେ ସୁଦ୍ଧା "୧୯୭'... |
| ୩୮ | ୨୩ | ଦଆଯାଉ | ଦଆଯାଇଛି |

| ପୃଷ୍ଠା | ଧାଡ଼ି | ଭୁଲ | ଠିକ |
|---|---|---|---|
| ୪୦ | ୧୯ | ଆମେରିକା | ଆମେରିକାର |
| ୪୪ | ଶେଷଧାଡ଼ି | ସକାଶେ | ସକାଶେ । |
| ୪୫ | ୬ | Conscience | Conscious |
| ୪୫ | ୭ | efforts unite | efforts to unite |
| ୪୫ | ୧୭ | ଶକ୍ତିଶାଳୀ ସେ | ଶାନ୍ତିଶାଳୀ ଏବଂ ଏହି ଦଳଙ୍କରେ ସେ |
| ୪୭ | ୭ | ଶ୍ରେଣୀ | ଶ୍ରେଣୀର |
| ୪୭ | ୯ | ଆକ୍ରମଣ । | ଆକ୍ରମଣ ତ |
| ୪୭ | ୯ | ସର୍ବଶ୍ରେଷ୍ଠ ଆକ୍ରମଣ | ସର୍ବଶ୍ରେଷ୍ଠ ଆକ୍ରମଣ । |
| ୪୭ | ୧୨ | ସାମ୍ରାଜ୍ୟବାଦ | ସାମ୍ରାଜ୍ୟବାଦୀ |
| ୪୭ | ୧୮ | ସାମ୍ରାଜ୍ୟବାଦ | ସାମ୍ରାଜ୍ୟବାଦୀ |
| ୪୭ | ୧୯ | ସାମ୍ରାଜ୍ୟବାଦ | ସାମ୍ରାଜ୍ୟବାଦୀ |
| ୪୮ | ୩ | ବଜାର | ବଜାର |
| ୪୮ | ୯ | ତଥା ବର୍ତ୍ତମାନ ଆକ୍ରମଣ | ବର୍ତ୍ତମାନ ଆକ୍ରମଣ ତଥା |
| ୪୮ | ୧୦ | ଶ୍ରେଣୀଙ୍କୁ | ଶ୍ରେଣୀଙ୍କର |
| ୪୯ | ୩୦ | Confirming | Confining |
| ୫୦ | ୨୫ | ଆନ୍ଦୋଳନ | ଆନ୍ଦୋଳନରେ |
| ୫୧ | ୧୨ | ଚତୁସ୍ପ ଦଲ୍ଲ | ଚତୁସ୍ପ ବର୍ଣ୍ଣର ଦଲ୍ଲ |
| ୫୧ | ୧୬ | ଆମ୍ଭ | ଆମ୍ଭେ |
| ୫୨ | ୬ | ସାମ୍ଭବ୍ୟ | ସମ୍ଭାବ୍ୟ |
| ୫୩ | ୨୬ | ଅଯଥା | ଅନ୍ୟଥା |
| ୫୮ | ୨୭ | ଶାନ୍ତ ପୂର୍ଣ୍ଣ | ଶାନ୍ତିପୂର୍ଣ୍ଣ |
| ୫୮ | ୨୭ | ବ୍ୟକ୍ତ | ବ୍ୟକ୍ତ ) |
| ୬୦ | ୨୭ | ଶାନ୍ତ | ଶାନ୍ତି |
| ୬୩ | ୫ | ସୁହାଁଇଲ | ମୁହାଁଇଲ |
| ୬୫ | ୨୦ | ମୈତ୍ରି | ମୈତ୍ରୀ |

| ପୃଷ୍ଠା | ଧାଡ଼ି | ଭୁଲ୍ | ଠିକ୍ |
|---|---|---|---|
| ୬୭ | ୨୭ | ଶୃକଳ | ଶୃଙ୍ଖଳ । |
| ୬୭ | ୨୮ | ଅଧକ | ଅଧିକ |
| ୬୭ | ୧ | ପୃର | ପୃଷ୍ଠା |
| ୬୭ | ୨୫ | ପରସ୍ଥିତ | ପରିସ୍ଥିତି |
| ୬୭ | ୨୭ | ସ୍ୱୀକୃତ | ସ୍ୱୀକୃତି |
| ୬୮ | ୧୧ | WWIC | WWIC । |
| ୬୮ | ୧୧ | Ante | Anti |
| ୬୮ | ୨୧ | ) | ] |
| ୬୯ | ୧୧ | ମାମା ଜ୍ୟବାଦ | ସାମ୍ରାଜ୍ୟବାଦୀ |
| ୬୯ | ଶେଷଧାଡ଼ି | ସ୍ୱୀକୃତ | ସ୍ୱୀକୃତି |
| ୭୦ | ୭ | ଛା'ର | ଛାର |
| ୭୨ | ୧ | ଯାହାର | ( ଯାହାର |
| ୭୮ | ୩ | ମୁକ୍ତ | ମୁକ୍ତି |
| ୮୦ | ୨ | ପଢବନ୍ଧକ | ପ୍ରତିବନ୍ଧକ |
| ୮୩ | ୧୨ | ନାଲ୍ସ | ସାଲ୍ସ |
| ୮୩ | ୨୫ | ପ୍ରତିସ୍ଥା | ପ୍ରତିଷ୍ଠାକୁ |

— X —

# “ ଓଡିଶାକୁ ସାମରିକ ଘାଟି ମୁକ୍ତ କର ”

# “ MAKE ORISSA FREE FROM MILITARY BASE “

Lala Batya Prakashan, Bari Road, Simulia, Balasore, ORISSA- 756126

PRICE : Rs. 10-00